

# ଜହ୍ନମାମୁଁ

ଅଗଷ୍ଟ ୧୯୮୪



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୦୦
ବାର୍ଷିକ ମୂଲ୍ୟ : ୨୪-୦୦

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍ଡୀ

---

ଅଗଷ୍ଟ ସ୍ୱାଧୀନତାର ମାସ । ଯେଉଁ ଅଗଷ୍ଟ ପନ୍ଦରରେ ଭାରତ ସ୍ୱାଧୀନ ହେଲା, ସେହି ଅଗଷ୍ଟ ପନ୍ଦର ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ପୁରୋଧା ତଥା ମାନବଜାତିର ଭବିଷ୍ୟତର ଦିଗଦ୍ରଷ୍ଟା । ଏ ଯୁଗର ମହାନ୍ ଋଷି ଶ୍ରୀ ଅରବିନ୍ଦଙ୍କର ଜନ୍ମଦିବସ । ଏହି ପବିତ୍ର ଅବସରରେ "ଜହ୍ନମାମୁଁ" ସମସ୍ତଙ୍କୁ ଅଭିବାଦନ ଜଣାଉଛି ।

## ଅମରବାଣୀ

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ॥

[କାମ, କ୍ରୋଧ ଓ ଲୋଭ, ଏ ତିନି ହେଲେ ନର୍କର ଦ୍ୱାର ସ୍ୱରୂପ । ଏମାନେ ମଣିଷର ବିନାଶ ସାଧନ କରିପାରନ୍ତି । ତେଣୁ ଏ ତିନିଙ୍କୁ ତ୍ୟାଗ କରିବା ଉଚିତ ।]

---

ବର୍ଷ : ୮ ଅଗଷ୍ଟ ୧୯୮୪ ଅଙ୍କ : ୨

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ



## ନିଦ ଭଙ୍ଗାଇବା ଔଷଧ

ନିଦ ହେବା ପାଇଁ ମଣିଷ ଔଷଧ ଖାଆନ୍ତି, ଏକଥା ସର୍ବଜନବିଦିତ । କିନ୍ତୁ ଜର୍ମାନୀର ଜଣେ ଗୋଟାଏ ଔଷଧ ଆବିଷ୍କାର କରିଛନ୍ତି, ଯାହା ମାତ୍ରା ଅନୁସାରେ ଖାଇଲେ ଯେତେବେଳେ ନିଦ ଭଙ୍ଗିବା ଦରକାର, ଠିକ୍ ସେତିକିବେଳେ ସେ ନିଦ ଭଙ୍ଗାଇଦେବ ।

## ସିଂହ ପ୍ରହରୀ

ଇଟାଲିର ନେପ୍‌ଲ୍‌ସ ନଗରୀ ଉପକଣ୍ଠବର୍ତ୍ତୀ ଗୋଟାଏ ଛୋଟ ସହରରେ ଗୋଟାଏ ଦୋକାନ ଅଛି, ଯାହା ଆଗରେ ଦୁଇଟି ସିଂହ ପହରା ଦିଅନ୍ତି । ଦୋକାନୀ ସେ ଦୁଇଟିକୁ ଗୋଟାଏ ସର୍କସ୍‌ଠୁଁ କିଣିଥିଲା ଓ ଅତି ସ୍ନେହରେ ବଢ଼ାଇଥିଲା । ସେ ଦୁହେଁ ପ୍ରତିବେଶୀମାନଙ୍କ ପ୍ରତି ଭଲ ବ୍ୟବହାର କରନ୍ତି । ରାତିରେ ଦୋକାନ ଜଗନ୍ତି । ଏବେ ପୋଲିସ୍ ମାଲିକଙ୍କୁ କହି ଦେଇଛି, ଏଣିକି ସେମାନେ ଚିଡ଼ିଆଖାନାରେହିଁ ରହିବେ ।





## ନୂଆ ରେକର୍ଡ

ପଶ୍ଚିମ ଜର୍ମାନୀର ଇସ୍‌ଲିଂଟନ୍ ନଗରୀର ଆଠଜଣ ମହିଳା ଅଢ଼େଇ ମିଟର ଉଚ୍ଚ ଆଠଟି ଖୁମ୍ବ ଉପରେ ୧୨୨ ଘଣ୍ଟା କାଳ ବସି ରହି ଏ ଦିଗରେ ରେକର୍ଡ ସୃଷ୍ଟି କରିଛନ୍ତି ।

## ଜାଣନ୍ତି କି ?

୧. ଟେଲିଫୋନ୍‌ର ଉଦ୍‌ଭାବକ କିଏ ?

୨. ଦୂରବୀକ୍ଷଣର ନିର୍ମାଣକାରୀ ବୈଜ୍ଞାନିକ କିଏ ?

୩. ଗ୍ରାମୋଫୋନ୍‌ର ଉଦ୍‌ଭାବକ କିଏ ?

୪. ଡାକବାଜ ଯନ୍ତ୍ରର ଉଦ୍‌ଭାବକ କିଏ ?

୫. ଷ୍ଟେଥୋସ୍କୋପ୍‌ର ଉଦ୍‌ଭାବନ କିଏ କରିଥିଲେ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ବିଦ୍ୟାର ଅଧିକାର

କୋଶଳ ଦେଶରେ ଅବସ୍ଥିତ ଗୋଟିଏ ଅରଣ୍ୟ ଭିତରେ ବିମଳାନନ୍ଦ ନାମକ ଜଣେ ଆଚାର୍ଯ୍ୟ ରହୁଥିଲେ । ତାଙ୍କ ଆଶ୍ରମରେ ଯୋଗଠୁଁ ଆରମ୍ଭ କରି ଆୟୁର୍ବେଦ ପର୍ଯ୍ୟନ୍ତ ନାନା ବିଦ୍ୟା ଶିକ୍ଷା ଦେବା ନିମନ୍ତେ ଉପଯୁକ୍ତ ଶିକ୍ଷକମାନେ ରହିଥିଲେ । ବଣ ଭିତରେ ଗୋଟିଏ ବିଶାଳ ଅଞ୍ଚଳ ବ୍ୟାପୀ ତାଙ୍କ ଆଶ୍ରମର ଭିନ୍ନ ଭିନ୍ନ ବିଭାଗ ପ୍ରସାରିତ ହୋଇ ରହିଥିଲା ।

ସୁଦାସ ଓ ମୋହନ ନାମକ ଦୁଇ ବାଳକ ଦିନେ ସହରରୁ ଯାଇ ଆଚାର୍ଯ୍ୟ ବିମଳାନନ୍ଦଙ୍କୁ ଭେଟିଲେ । ତାଙ୍କୁ ପ୍ରଣାମ କରି ଦୁହେଁ ବିଦ୍ୟାଲାଭ ନିମନ୍ତେ ସେମାନଙ୍କ ଆଗ୍ରହ ବିଷୟ ତାଙ୍କୁ ଜଣାଇଲେ ।

"ଭଲ କଥା । କିନ୍ତୁ କେଉଁ ବିଦ୍ୟା ଶିକ୍ଷା ସକାଶେ ତୁମର ଯୋଗ୍ୟତା ଅଛି, ପ୍ରଥମେ ତାହା ନିରୂପଣ କରିବାକୁ ହେବ । ସେଥିପାଇଁ ଆଶ୍ରମରେ କିଛିଦିନ ତମେ ଦୁହେଁ ରହିବା ଦରକାର । ରହଣି ସମୟରେ ଆଶ୍ରମର ନିୟମ ମାନି ଚଳିବାକୁ ହେବ । ଏଥିରେ ରାଜି ଅଛ ?"

"ମହାଶୟ, ଆମେ ଏଥିରେ ସମ୍ପୂର୍ଣ୍ଣ ରାଜି ।" ସୁଦାସ ଓ ମୋହନ କହିଲେ ।

"ବେଶ୍, ବେଶ ।" ଏହା କହି ଆଚାର୍ଯ୍ୟ ସେମାନେ କେଉଁ କୁଟୀରରେ ରହିବେ ତାହା ଦେଖାଇ ଦେଲେ । ଆଶ୍ରମର ନିୟମ ଶୃଙ୍ଖଳା କ'ଣ, ତାହା ସେ ଦୁହିଙ୍କୁ ବୁଝାଇ ଦେବାକୁ ଜଣେ ଶିକ୍ଷକଙ୍କୁ ସେ ନିର୍ଦ୍ଦେଶ ଦେଲେ ।

ଦୁଇଜଣଙ୍କୁ ପ୍ରତ୍ୟେକ ଦିନ ଅନ୍ୟ ଆଶ୍ରମବାସୀଙ୍କ ଭଳି କିଛି ନା କିଛି କାମ କରିବାକୁ ପଡୁଥାଏ । ଦିନେ ସେ ଦୁହିଙ୍କ ଉପରେ



କାଳେଣି କାଠ ଆଣିବାର ଭାର ପଡ଼ିଲା । କାଳେଣି କାଠର ଅଭାବ ନଥାଏ । ଦୁଇ ବନ୍ଧୁ ଅଦୂରରେ ଗୋଟାଏ ଶୁଖିଲା ଗଛ ଦେଖି ତାକୁ କାଟି ପକାଇଲେ ।

ସୁଦାସ କାଠକୁ ଛୋଟ ଛୋଟ କରି କାଟିବାରେ ବ୍ୟସ୍ତ ଥାଏ, ଏଣେ ମୋହନର ଦୃଷ୍ଟି ସେ ଶୁଖିଲା ଗଛର ତଳ ଅଂଶରେ ଥିବା କିଛି ବସ୍ତୁ ଉପରେ ପଡ଼ିଲା । ସେ ଦେଖିଲା, ଥୁଳାଏ ସୁନା ମୋହର ।

"ଆରେ!" ସେ ଆନନ୍ଦ ଓ ବିସ୍ମୟରେ ଷାଟିକରି ଉଠିଲା ।

ସୁଦାସ କୌତୂହଳୀ ହୋଇ ଆସି ମୋହରତକ ଦେଖିଲା ।

"ସୁଦାସ! ଆଉ ଚିନ୍ତା କ'ଣ? ଏ ସୁନାତକ ଭାଗ କରି ନେବା । ବେପାର ବଣିଜ କରି ଆରାମରେ ଚଳିବା ।" ମୋହନ କହିଲା ।

"ଆମେ ପଗ ବିଦ୍ୟା ପାଇଁ ଆସିଛୁଁ?" ସୁଦାସ କହିଲା ।

"ଆରେ, ଏତେ ଧନ ପାଇବା ପରେ ଆଉ ବିଦ୍ୟା କ'ଣ ପାଇଁ ଦରକାର?" ଏହା କହି ମୋହନ ସୁନାତକ ଦୁଇଭାଗ କରି ଭାଗେ ସୁଦାସକୁ ଦେଲା ଓ ଅନ୍ୟ ଭାଗଟି ନିଜ ପକେଟରେ ପୁରାଇଲା ।

"ମୋହନ, ତୁ ଭୁଲିଯାଇଛୁ ଯେ ଆଶ୍ରମର ଶୃଙ୍ଖଳା ଅନୁସାରେ ଆମେ ହଠାତ୍ କିଛି ପାଇଗଲେ ତାହା ନେଇ ଆଚାର୍ଯ୍ୟଙ୍କୁ ଦେବା କଥା!" ସୁଦାସ କହିଲା ।

"ଆଶ୍ରମରେ ରହିଲେ ତ ଶୃଙ୍ଖଳା ମାନିବା କଥା ଉଠିବ? ତୁ ରହିଲେ ରହ । ମୁଁ ଏଠାରୁ ଚାଲିଲି ।" ମୋହନ ବାସ୍ତବିକ ଚାଲିଗଲା ।

ମୋହନ ଉତ୍ସାହରେ ବାଟ ଚାଲିଥାଏ । ବାଟରେ ନଈଟିଏ ପଡ଼ିଲା । ସେଥିରେ ପାଣି ସାମାନ୍ୟ ଥାଏ ବୋଲି ବୁଝି ହେଉଥାଏ । ସେ ପାଣି ଭିତରଦେଇ ଚାଲିଛି, ହଠାତ୍ ଡାହାଣ ଗୋଡ଼ରେ କିଛି ଗୋଟାଏ ଗୁଡ଼େଇ ହୋଇଗଲା । ସେ ଗୋଡ଼ ଟେକି ଦେଖିବା-ବେଳକୁ ସାପ!

ସେ ଯେତେଶୀଘ୍ର ସମ୍ଭବ ଘୋଡ଼ା ଛୁଟାଇ ଦେଲା । ସାପ କୂଳରେ ଛୁଟିକି ପଡି ବୁଦା ଭିତରକୁ ଗୁଳିଗଲା । କିନ୍ତୁ ମୋହନ ଘୋଡ଼ାକୁ ଭଲକରି ପରୀକ୍ଷା କରି ଦେଖେ ତ ସାପଦାନ୍ତ ବସିବା ଭଳି ଚିହ୍ନ ରହିଛି । ତା' ହାଲିକ ଶୁଖିଗଲା । ସେ "କିଏ ଅଛ!" ବୋଲି ଚିତ୍କାର କରି ନଈ କୂଳେ କୂଳେ ଦୌଡ଼ିଲା ।

ହଠାତ୍ ଜଣେ ବନବାସୀ ସର୍ଦ୍ଦାର ଉପରେ ତା' ଆଖି ପଡ଼ିଲା । ସେ ବ୍ୟାକୁଳ ଭାବରେ ପଚାରିଲା, "ସାପ କାମୁଡ଼ି ଦେଇଛି । ଏଠାରେ କେହି ବିଷ ହରଣ କଲାଭଳି ମଣିଷ ଅଛନ୍ତି?"

"ମୁଁ ଅଛି । ଚିନ୍ତା କ'ଣ? ସଙ୍ଗେ ସଙ୍ଗେ ଭଲ କରିଦେବ । କିନ୍ତୁ, ବାବୁ, ତମ ପାଖରେ ଯାହା ଯେତେ ଧନଦୌଲତ ଅଛି ସବୁ ମୋତେ ଦେଇ ଦେବାକୁ ହେବ । ରାଜି?" ବନବାସୀ ସର୍ଦ୍ଦାର ପଚାରିଲା ।

ସେତେବେଳକୁ ଯନ୍ତ୍ରଣାରେ ସେ କାତର ହେଲଣି । ବିନା ଚିକିତ୍ସାରେ ବଞ୍ଚିବାର ଆଉ ଆଶା ତା'ର ନାହିଁ । ତେଣୁ ପକେଟରେ ଥିବା ସୁନାରୁ ମୁଠାଏ ସେ ବାହାର କରି ସର୍ଦ୍ଦାରକୁ ଦେଲା ।

"ନା, ବଞ୍ଚିବାର ଆଶାଥିଲେ ସବୁ ଦେବାକୁ ପଡିବ!" ସର୍ଦ୍ଦାର କହିଲା ।

ଅଗତ୍ୟା ମୋହନ ସବୁ ବାହାର କରିଦେଲା । ସର୍ଦ୍ଦାର ଖଣ୍ଡିଏ ଚେର ତାକୁ ଖୁଆଇ ଦେଇ ଝାଡ଼ଫୁଙ୍କ କଲା । ଦଶମିନିଟ ଭିତରେ ମୋହନ ପୁରା ସୁସ୍ଥ ଅନୁଭବ କଲା ।



ସର୍ଦ୍ଦାର ଚାଲିଗଲା । ମୋହନ କିଛି ସମୟ ବିଶ୍ରାମ କରି ପୁଣି ଆଶ୍ରମ ଆଡ଼େ ଚାଲିଲା ।

ଆଚାର୍ଯ୍ୟ ପଚାରିଲେ, "କ'ଣ ହେଲା ? କିଆଡ଼େ ଆସିଲ ?"

"ମହାଶୟ ମୋତେ ଆଶ୍ରମରେ ଗ୍ରହଣ କରନ୍ତୁ ଓ ଶିକ୍ଷା ଦିଅନ୍ତୁ ।" ମୋହନ କହିଲା ।

ଆଚାର୍ଯ୍ୟ ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, "ନା ବାପା, ଶିକ୍ଷା ପ୍ରତି ତମର ଆଗ୍ରହ ନାହିଁ । ଶିକ୍ଷାକୁ ତମେ ଖାଲି ଉପାର୍ଜନର ପନ୍ଥା ହିସାବରେ ବିଚାରୁଛ । କିନ୍ତୁ ଜଣେ ତ ଶହେ ଉପାୟରେ ଧନ ଉପାର୍ଜନ କରିପାରେ । ଶିକ୍ଷା କ'ଣ ଦରକାର ? ଯାହାର ଜ୍ଞାନ ପାଇଁ ତୃଷ୍ଣା ଅଛି, ତାହାର ଶିକ୍ଷା ଲାଭ ଦିଗରେ ସର୍ବନିମ୍ନ ଯୋଗ୍ୟତା ଅଛି ବୋଲି ଆମେ ବିଚାର କରୁ । ଯାହାର ସତ୍ୟ କ'ଣ ଜାଣିବା ପାଇଁ ବା ଭଗବାନଙ୍କୁ ଜାଣିବା ପାଇଁ ଆଗ୍ରହ ଅଛି, ତାହାର ଶିକ୍ଷା ପାଇଁ ବିଶେଷ ଯୋଗ୍ୟତା ଅଛି ବୋଲି ଆମର ମତ । ତମର ସର୍ବନିମ୍ନ ଯୋଗ୍ୟତା ବି ନାହିଁ ।"

"ଆଜ୍ଞା, ଆପଣ ମୋତେ ଥରେ ପରୀକ୍ଷା କରୁନାହାନ୍ତି ?" ମୋହନ ପଚାରିଲା ।

ଆଚାର୍ଯ୍ୟ ହସିଲେ । "ପରୀକ୍ଷା ହୋଇ ସାରିଛି !" ସେ କହିଲେ ।

ମୋହନ ଚାଲିଗଲା । ଆଶ୍ରମ ବାହାରେ ହଠାତ୍ ସେହି ସର୍ଦ୍ଦାର ଉପରେ ତା'ର ଆଖି ପଡ଼ିଗଲା । ଜଣେ ଆଶ୍ରମବାସୀଙ୍କୁ ସେ ପଚାରିଲା, "ଇଏ କିଏ ?"

"ସେ ଆମ ଏଠାରେ ଇନ୍ଦ୍ରଜାଲ ବିଦ୍ୟାର ଶିକ୍ଷକ । ଆଜି କୌଣସି କାରଣରୁ ବନବାସୀ ସର୍ଦ୍ଦାର ବେଶ ଧାରଣ କରିଛନ୍ତି ।"

ମୋହନ ଏଥର ବୁଝିଲା, କିପରି ଭାବରେ ତା'ର ପରୀକ୍ଷା ନିଆ ଯାଇଛି । ବିତ୍ତ ଥିଲା, ପୁଣି ଚାଲିଗଲା । କିନ୍ତୁ ସେ ବିଦ୍ୟା ଅର୍ଜନ କରିଥିଲେ ତାହା ଚାଲିଯାଇ ନଥାନ୍ତା ! ବଡ଼ ଭୁଲ ହୋଇଗଲା !






[ ୧୪ ]

[ ଜଳଦସ୍ୟୁ କପ୍ତାନର ଜାହାଜକୁ ଅନ୍ୟ ଗୋଟିଏ ଦସ୍ୟୁ ଜାହାଜ ଆକ୍ରମଣ କରିବାକୁ ବସିବାରୁ କପ୍ତାନ ପିଙ୍ଗଳ ସମେତ ନିଜର ସବୁ ଗୁଲାମଙ୍କୁ ମୁକ୍ତ କରିଦେଲା । ଗୁଲାମମାନେ ତା' ପାଇଁ ଯୁଦ୍ଧ କରିବେ, ଏଇଆ ଥିଲା ତା'ର ଉଦ୍ଦେଶ୍ୟ । କିନ୍ତୁ ପିଙ୍ଗଳର ନେତୃତ୍ୱରେ ଗୁଲାମମାନେ ବିଦ୍ରୋହ କଲେ । କପ୍ତାନର ମୃତ୍ୟୁ ହେଲା । ଦୁଇ ଜାହାଜ ଭୀଷଣ ଭାବରେ ପରସ୍ପର ଧକ୍କା ଖାଇଲେ । ପିଙ୍ଗଳ ଛିଟିକି ଅଥଳ ସମୁଦ୍ରରେ ପଡିଲା । ତା'ପରେ— ]

ସମୁଦ୍ରରେ ପଡି ପିଙ୍ଗଳ ପ୍ରଥମେ ପାଣି ଭିତରକୁ ବୁଡିଗଲା । ତା'ପରେ ଭାସି ଉଠି ଚତୁର୍ଦ୍ଦିଗକୁ ଅନାଇ ଦେଖିଲା, ଦୁଇଟି-ଯାକ ଜାହାଜ ଖଣ୍ଡ ଖଣ୍ଡ ହୋଇ ଯାଇଛନ୍ତି । ପ୍ରବଳ ପବନରେ ପାଲମାନ ଛିନ୍ନବିଛିନ୍ନ ହୋଇ ଇତସ୍ତତଃ ଉଡିଯାଉଛନ୍ତି । ଦୁଇ ଜାହାଜର ଯାତ୍ରୀମାନେ ପ୍ରଚଣ୍ଡ ଲହରୀ ଉପରେ ଭାସି ରହିବାର ଚେଷ୍ଟା କରି ଆର୍ତ୍ତନାଦ କରୁଛନ୍ତି । ଯେପରି କି ସେମାନଙ୍କୁ ହିଂସ୍ର ବାଘଭାଲୁ ଖାଇ ପକାଉଛନ୍ତି!

ପିଙ୍ଗଳ ଆଖପାଖରେ ସ୍ଥଳ ଭାଗ ଥିବାର କୌଣସି ଲକ୍ଷଣ ଦେଖିଲା ନାହିଁ । କେତେ ସମୟ ସେ ନିଜ ବାହୁ ପିଟି ପିଟି ପାଣି ଉପରେ ଭାସି ରହି ପାରିବ ? ଜାହାଜ ଭାଙ୍ଗିଯିବା



ଫଳରେ ସେଥିରେ ଥିବା ଛୋଟ ଛୋଟ କେତେଖଣ୍ଡି ନୌକା ମଧ୍ୟ ବାତ୍ୟା ଯୋଗୁଁ ବୁଡ଼ି ଯାଇଥିଲେ ବୋଲି ମନେ ହେଉଥିଲା । ସେ ନିଜ ଜୀବନର ଆଶା ଛାଡ଼ିଦେଲା । ଦସ୍ୟୁମାନେ ବୁଡ଼ିବା ଯୋଗୁଁ ସେ ଯେପରି ସନ୍ତୋଷ ଲଭି କରୁଥିଲା, ହତଭାଗ୍ୟ ଗୁଲାମମାନେ ବି ସମଦଶା ଭୋଗୁଥିବା ଯୋଗୁଁ ତା' ମନରେ ସେତିକି ଦୁଃଖ ହେଉଥିଲା ।

କେଉଁ ଦିଗକୁ ସନ୍ତରଣ କରି ଗଲେ କିଛି ସାହାଯ୍ୟ ମିଳିବ, ପିଙ୍ଗଳ ସେକଥା ବୁଝିପାରୁ ନଥାଏ । ତେଣେ ଜାହାଜ ଉପରେ କିଛି ସମୟ ଯୁଦ୍ଧ କରି ସେ କ୍ଳାନ୍ତ ହୋଇ ପଡ଼ିଥାଏ । ତହିଁ ଉପରେ ପୁଣି ଉତ୍ତାଳ ଲହରୀ ଉପରେ ଭାସି ରହିବାକୁ ସର୍ବଦା ବାହୁ ସଞ୍ଚାଳନ କରିବାକୁ ପଡୁଥାଏ । କେତେ ସମୟ ପର୍ଯ୍ୟନ୍ତ ସେ ଏପରି ଭାବରେ ବଞ୍ଚିରହି ପାରିବ ? ଅନ୍ୟ ଉପାୟ ବା କ'ଣ ?

ସେ ଶେଷକୁ ସ୍ଥିର କଲା, ଯେ ପର୍ଯ୍ୟନ୍ତ ବାହୁରେ ସାମାନ୍ୟ ବଳ ରହିଛି, ସେ ପର୍ଯ୍ୟନ୍ତ ସେ ଭାସି ରହିବ । ତେଣିକି ଧିରେ ଧିରେ ସମୁଦ୍ର ଗର୍ଭକୁ ଚାଲିଯିବ । ଏହାପରି ଭାବରେ ମୃତ୍ୟୁ ତାକୁ କବଳିତ କରିବ । ତାହାହିଁ ହେଉ । ବଞ୍ଚି ରହିବାକୁ ବ୍ୟାକୁଳ ହୋଇ ଲାଭ ନାହିଁ ।

ସେ ଏମିତି ହାଲ୍ ଛାଡ଼ିଦେବା ବେଳକୁ ତା' ହାତରେ ଗୋଟାଏ କିଛି ବାଡ଼େଇ ହୋଇଗଲା । ପିଙ୍ଗଳ ଆଖି ଖୋଲି ଦେଖିଲା, ତାହା କୌଣସି ନୌକାର ଗୋଟାଏ ଅଂଶ । ସେ ତତ୍‌କ୍ଷଣାତ୍ ତାକୁ ଜାବୁଡ଼ି ଧରିଲା । ତେଣିକି ଆଉ ସର୍ବଦା ପାଣି ଉପରେ ହାତଗୋଡ଼ ବାଡ଼େଇବା ଦରକାର ହେଲା ନାହିଁ । ସେ ଟିକିଏ ସ୍ୱସ୍ତିରେ ନିଃଶ୍ୱାସ ନେବାର ସୁଯୋଗ ପାଇଲା । ସଙ୍ଗେ ସଙ୍ଗେ ଆଖି ଆଗରେ ଭାସି ଉଠିଲା ମା'ର ଚିତ୍ର । ତାକୁ ଦସ୍ୟୁମାନେ ଧରି ଆଣିବା ପରେ ମା'ର ଅବସ୍ଥା କ'ଣ ହୋଇଥିବ ? ଭାଇମାନେ ପୁଣି ବୁଢ଼ୀ ପ୍ରତି ଦୁର୍ବ୍ୟବହାର କରୁଥିବେ କି ? ଯେଉଁ ଯାହୁ ଥିଲା ସେ ମା' ଜମା ରଖି ଆସିଛି, ତାହା ମହଜମାରୁ ଖାଦ୍ୟପେୟ ପାଇଁ



ମା'ର କୌଣସି କଷ୍ଟ ହେବା କଥା ନୁହେଁ । କିନ୍ତୁ ଭାଇମାନେ ତା' ପ୍ରତି ସଦୟ ହେଲେ ହେଲା ।

ମନରେ ଆଶା ହେଲା, ହୁଏତ ସେ କୂଳରେ ଯାଇ ପହଞ୍ଚିବ ଓ ଦିନେ ନା ଦିନେ ଘରେ ପହଞ୍ଚି ପୁଣି ମା'କୁ ଭେଟିବ ।

ମା କଥା ମନେ ପଡ଼ିବା ମାତ୍ରେ ସେ ଯେ କୌଣସି ମତେ ବଞ୍ଚିରହିବା ସକାଶେ ବଦ୍ଧ-ପରିକର ହେଲା । ମା ତା' ଦୁର୍ଦ୍ଧଶା କଥା ଜାଣି ନଥିବେ । ଛଗଲା ପୁଅ କୁଆଡ଼େ ଚାଲି ଯାଇଛି, ଶୀଘ୍ର ହେଉ ବା ବିଳମ୍ବରେ ହେଉ ନିଶ୍ଚେ ଫେରି ଆସିବ, ଏଇ ଆଶାରେ ସେ ବାଟ ଚାହିଁ ରହିଥିବେ । ତେଣୁ ତାକୁ ଯେମିତି ହେଲେ ଫେରିଯିବାକୁ ପଡ଼ିବହିଁ ପଡ଼ିବ ।

ତୋଫାନ୍‌ର ବେଗ କମି ଆସିଲା । ଆକାଶରୁ ମେଘମାଳା ହଟିଗଲେ । ବଞ୍ଚିରହିବା ପାଇଁ ପିଙ୍ଗଳର ଆଶା କ୍ରମେ ଗାଢ଼ ହେଲା । ସେତେବେଳେ ସେ କ୍ଷୁଧାତୃଷ୍ଣା ଓ ଦେହ ଉପରେ ପାଣି ପବନର ମାଡ଼ କଥା ସବୁ ଭୁଲି ଯାଇଥାଏ ।

କିନ୍ତୁ କେତେ ସମୟ ପର୍ଯ୍ୟନ୍ତ ଜଣେ ମଣିଷ ସେସବୁ ଭୁଲି ରହିପାରେ ? ସୂର୍ଯ୍ୟ ଅସ୍ତ ଗଲେ । କ୍ରମେ ଅନ୍ଧକାର ଘୋଟି ଆସିଲା । ଥଣ୍ଡାରେ ଦେହ କମ୍ପୁଥାଏ । ଭୋକ ସାଥିକୁ ପ୍ରବଳ ତୃଷ୍ଣା । ସେ ଆଉ କିଛି ଉପାୟ ନପାଇ ଦୁଇତିନି ଢ଼ୋକ ଲୁଣିପାଣି ପିଇନେଲା । ସଙ୍ଗେ ସଙ୍ଗେ ପେଟରେ ଅନୁଭବ କଲା ଯନ୍ତ୍ରଣା ।

ତେବେ କ୍ଳାନ୍ତି ଓ ହତାଶା ଭିତରେ ତାକୁ ନିଦ ଲାଗିଗଲା । ତାହାହିଁ ହେଲା ତା' ପ୍ରତି ଆଶୀର୍ବାଦ ସ୍ୱରୂପ ।

ସେ କେତେ ସମୟ ଶୋଇ ପଡ଼ିଥିଲା ଜାଣେନା । ଆଖି ଖୋଲିବା ବେଳକୁ ଆକାଶ ନିର୍ମଳ । ଚାରିଆଡ଼େ ଖରା ପଡ଼ିଛି । ସେ ବି ଆଉ ଭାସମାନ ଅବସ୍ଥାରେ ନାହିଁ ।

ଧିରେ ଧିରେ ସେ କହୁଣି ଉପରେ ଭର ଦେଇ ମୁଣ୍ଡ ଟେକି ଦେଖିଲା, ସେ ଆସି ସ୍ଥଳରେ ଲାଗିଛି । ତା' ଗୋଡ଼ ଦୁଇଟି ସେଯାଏ ପାଣିରେ ଅଛି ।




ସାରା ରାତି ସେ ଯେ ନିଦ୍ରିତ ରହିପାରିଥିଲା, ସେଥିପାଇଁ ସେ ନିଜ ଭାଗ୍ୟକୁ ଧନ୍ୟବାଦ ଦେଲା । ସେ ଅନୁଭବ କଲା ନିଦ୍ରା ଅନେକ ପରିମାଣରେ ତା' କ୍ଲାନ୍ତି ଦୂର କରି ଦେଇଛି । ଯାହାହେଉ ସ୍ଥଳ ଭାଗରେ ପହଞ୍ଚି ପାରିଥିବା ଯୋଗୁଁ ଭିତରେ ସେ ପ୍ରବଳ ଉତ୍ସାହ ଅନୁଭବ କଲା । ଏ ଯାତ୍ରା ହୁଏତ ସେ ବଞ୍ଚିଗଲା, ଏହି ଆଶା ତାକୁ ନୂଆ ପ୍ରେରଣା ଦେଲା ।

ସେ ଠିଆ ହୋଇପଡ଼ି ବାଲି ଉପରକୁ ଗଲା । କିନ୍ତୁ ଯେତେଦୂର ଆଖି ଯାଉଛି, ଖାଲି ବାଲି ଆଉ ବାଲି । ଗୋଟିଏ ବି ଗଛର ଦେଖା ନାହିଁ, ଘର ଦ୍ୱାର ତ ଦୂରର କଥା ।

ଆକାଶକୁ ଅନାଇ ସେ ଦେଖିଲା ଦଳେ ଶାଗୁଣା ଚକ୍ରାକାରେ ଉଡ଼ୁଛନ୍ତି ଓ କ୍ରମେ ତଳକୁ ତଳକୁ ଆସୁଛନ୍ତି । ସେ ଅନୁମାନ କଲା, ଯେଉଁଠି ଶାଗୁଣା ପଲ ଓହ୍ଲାଇବେ, ସେଠାରେ ନିଶ୍ଚୟ ଗାଁ ବା କାହାରି ଶିବିର ଥିବ ।

ତେଣୁ ସେହି ଦିଗକୁ ଲକ୍ଷ୍ୟ କରି ସେ ଚାଲିଲା । ସେତେବେଳକୁ ଖରାରେ ବାଲି ତାତି ଗଲାଣି । ସେ ଦୌଡ଼ିବାକୁ ଲାଗିଲା ।

ଅଳ୍ପ ସମୟ ଭିତରେ ସେ ଗନ୍ତବ୍ୟ ସ୍ଥାନରେ ପହଞ୍ଚିଲା । କିନ୍ତୁ ଯାହା ଦେଖିଲା, ସେଥିରେ ହତାଶା ସାଙ୍ଗକୁ ବିସ୍ମୟ ତାକୁ ଆବୃତ୍ତ କଲା । ଗାଁ ଗଣ୍ଡା ନାହିଁ, କିନ୍ତୁ ଗୋଟିଏ ମଣିଷକୁ ଖଣ୍ଡିଏ ଉଚ୍ଚ ପଥର ଦେହରେ କସି କରି ବାନ୍ଧି ଦିଆ ଯାଇଛି । ତା' ଦେହରେ ପ୍ରାଣ ଥିବାର ଜଣାପାଉ ନାହିଁ । ଶାଗୁଣାମାନେ ତାକୁ ଭକ୍ଷଣ କରିବା ଉଦ୍ଦେଶ୍ୟରେ ଭିଡ଼ କରୁଛନ୍ତି ।

ପିଙ୍ଗଳ ଖଣ୍ଡିଏ ପଥର ଉଠାଇ ଶାଗୁଣାପଲ ଆଡ଼କୁ ଫୋପାଡିଲା । ସେଥିରେ ଅଧିକାଂଶ ଶାଗୁଣା ପଳାଇଗଲେ । ଆଉ କେତୋଟି ଦୂରରେ ରହି ଡେଣା ଝାଡି ଝାଡ଼ି ପିଙ୍ଗଳକୁ କ୍ରୋଧ ଭରେ ଲକ୍ଷ୍ୟ କରିବାକୁ ଲାଗିଲେ ।

ପିଙ୍ଗଳ ସେ ଲୋକ ପାଖରେ ଯାଇ ପହଞ୍ଚିଲା । ତା' ଆଖି ବନ୍ଦ ଥିଲା । ତା'



ଛାତିରେ ହାତ ରଖି ସେ ଦେଖିଲା, ତାହା ନିସ୍ପନ୍ଦ ।

ସେ ମରୁଭୂମି ଭିତରେ ଗୋଟାଏ ଲୋକଙ୍କୁ ଏପରି ନିର୍ମମ ଭାବରେ ଦଣ୍ଡ ଦେବା ଭଳି ଲୋକ ଅଛନ୍ତି, ଏହା ଭାବି ପିଙ୍ଗଳ ଆଶ୍ଚର୍ଯ୍ୟ ହେଲା । ତେବେ ଭୟଙ୍କର ଓ ନିର୍ଜନ ଲାଗୁଥିବା ସେ ଅଞ୍ଚଳକୁ ଯେ କେହି କେହି ମଣିଷଙ୍କର ଯାତାୟତ ରହିଛି, ସେତକ ସେ ବୁଝିପାରିଲା । ହୁଏତ କିଛି ଦୂରରେ ଜନବସତି ବି ରହିଥିବ ।

ପିଙ୍ଗଳ ବର୍ତ୍ତମାନ କ'ଣ କରିବ, ସେଇ ବିଷୟ ଚିନ୍ତା କଲା । ଯାହା ତାର ସବୁଠାରୁ ଜରୁରୀ ପ୍ରୟୋଜନ, ତାହା ଖାଦ୍ୟ ଓ ପାନୀୟ ! ସେତକ ବିନା ସେ କ୍ରମେ ଦୁର୍ବଳ ହୋଇଯିବ । ତେଣିକି ଆଶ୍ରୟ ଖୋଜିବା ନିମନ୍ତେ କୁଆଡ଼େ ଯିବା ମଧ୍ୟ ତା' ପକ୍ଷରେ ସମ୍ଭବପର ହେବ ନାହିଁ । କିନ୍ତୁ ଖାଦ୍ୟପେୟ ସେ ପାଇବ କାହୁଁ ?

ଯେତେବେଳେ ପିଙ୍ଗଳ ଏହି ଚିନ୍ତାରେ ମଗ୍ନ, ସେତେବେଳେ ଦୂରରେ ଯାଉଥିବା ଓଟ ଉପରେ ଆରୋହୀ ଦଳେ ଲୋକଙ୍କ ନେତା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପଥର ଦେହରେ ବନ୍ଧାଥିବା ସେ ଲୋକକୁ, ପିଙ୍ଗଳକୁ ଏବଂ ଉପରେ ଚକ୍କର କାଟୁଥିବା ଶାଗୁଣା ଦଳକୁ ଦେଖି ପାରିଲେ । ତାଙ୍କ ନିର୍ଦ୍ଦେଶରେ ଓଟ ଦଳ ଗତି ବଢ଼ାଇ ସେହି ଦିଗକୁ ମାଡ଼ି ଆସିଲେ ।

ଦୂରରେ ଧୂଳି ଉଡ଼ିବାର ଦେଖି ପିଙ୍ଗଳ ମନରେ ଆଶାର ସଞ୍ଚାର ହେଲା । ସେ ଏକ ଧ୍ୟାନରେ ସେ ଆଡ଼େ ଅନାଇ ରହିଲା । କ୍ରମେ ଓଟାରୋହୀମାନେ ତା'ର ଦୃଷ୍ଟି ଗୋଚରେ ହେଲେ । ସେତେବେଳକୁ ତା' ମନରେ ଆଶା ସହିତ ଆଶଙ୍କା ବି ଦେଖାଦେଲା । ଯଦି ସେମାନେ ଦସ୍ୟୁଦଳ ହୋଇଥିବେ, ତେବେ ତାକୁ ବନ୍ଦୀ କରିବେ ନଚେତ୍ ମାରିଦେବେ । ସେ ଯେ କୁଆଡ଼େ ପଳାଇଯାଇ ଆତ୍ମଗୋପନ କରିବ, ସେ ସମ୍ଭାବନା ନାହିଁ । ବଣବୁଦା ନାହିଁ କି ତା'ର ବି ଚାଲିବାର ଶକ୍ତି ନାହିଁ ।

ସେ ସନ୍ତ୍ରସ୍ତ ଭାବରେ ଏଣେତେଣେ ଅନାଇଲା । ଦୁଇ ଚାରି ପାହୁଣ୍ଡ ପଛକୁ ବି




ଘୁଞ୍ଚିଗଲା। ତା'ର ସେଭଳି ହାବଭାବ ଦେଖି ଓଟଦଳ ଆଗରେ ଥିବା ବ୍ୟକ୍ତି ପାଟି କରି କ'ଣ କହିଲା। ପିଙ୍ଗଳ କିଛି ବୁଝି ପାରିଲା ନାହିଁ। କିନ୍ତୁ ତା'ର ଧାରଣା ହେଲା ଯେ ସେ ବ୍ୟକ୍ତି ତାକୁ ଧମକ ଦେଉଛି।

ଓଟଦଳ ତା' ପାଖକୁ ମାଡି ଆସିଲେ। ସେମାନଙ୍କ ସର୍ଦ୍ଦାର ନିର୍ଦ୍ଦେଶ ଦେବା ମାତ୍ରେ ତା' ଅନୁଚରମାନେ ଓହ୍ଲାଇ ପଡ଼ି ପିଙ୍ଗଳକୁ ଘେରିଗଲେ। ସର୍ଦ୍ଦାର ଧମକ ଦେଇ ପଚାରିଲା, "ତୁ ମରୁଦସ୍ୟୁ ଭୈରବର ଅନୁଚର କିରେ?" ଏହାପରେ ସେ ମୃତ ବ୍ୟକ୍ତିଟି ଆଡ଼େ ଅନାଇ କହିଲା, "ଇଏ ଆମ ଦଳର ଲୋକ। ଏଠାରେ ଆମ କଳ ଜଗିଥିବା ଅନ୍ୟମାନେ କାହାନ୍ତି? ଆମ କଳ ଭୈରବ ଅଧିକାର କରିନେଇ ନାହିଁ ତ?"

ପିଙ୍ଗଳ ପିଠିରେ ବର୍ଚ୍ଛାମୂନ ଖେଞ୍ଚିଦେଇ ଆଉ ଜଣେ ପଚାରିଲା, "ସତ କହ। ତୋ ନେତା ଭୈରବନାଥ ବର୍ତ୍ତମାନ କେଉଁଠି?"

ପିଙ୍ଗଳ ଏତିକି ବୁଝିଲା ଯେ ଭୈରବନାଥ କୌଣସି ଦସ୍ୟୁ ଦଳର ନେତା। କିନ୍ତୁ ଏମାନେ କିଏ?

ପିଙ୍ଗଳ କହିଲା, "ମୁଁ କାହାରି ଅନୁଚର ନୁହେଁ। ସମୁଦ୍ରରେ ଆମ ଜାହାଜ ଝଡ଼ବର୍ଷାରେ ପଡି ଡୁବିଗଲା। ଦୈବକୁ ପ୍ରାଣଧରି ମୁଁ ଆସି ଏଠି ପହଞ୍ଚିଲି। ଏ ଲୋକ ଦେହରେ ଜୀବନ ଥାଇପାରେ ଭାବି ମୁଁ ଢେଲା ଫୋପାଡ଼ି ଶାଗୁଣାମାନଙ୍କୁ ତଡ଼ିଲି। ଏ ମରୁଭୂମିର ନାମ କ'ଣ, ଏଠି କିଏ ରହନ୍ତି, ଏସବୁ ମୁଁ କିଛି ଜାଣେ ନାହିଁ।"

ସର୍ଦ୍ଦାର ଥରେ ପିଙ୍ଗଳକୁ ଆପାଦମସ୍ତକ ଦେଖିନେଇ କହିଲା, "ଦେଖ ଟୋକା, ତୁ ଯଦି ସତ କହୁଥିବୁ, ତେବେ ତୋର ଭୟ କରିବାର କୌଣସି କାରଣ ନାହିଁ। ଯଦି ମିଛ କହୁଥିବୁ, ତେବେ ତୋତେ ଖିନ୍‌ଭିନ୍ କରିଦେବା। ଶୁଣ, ଏହା ଆଫ୍ରିକା ମହାଦେଶର ଆରବ ଅଞ୍ଚଳ। ମୁଁ ଏଠାକାର ନବାବଙ୍କର ଓଟଦଳର ସର୍ଦ୍ଦାର। ବର୍ତ୍ତମାନ ସତ କହ, ତୁ କାହା ଜାହାଜରେ ଥିଲୁ?



ଜାହାଜ ଉବୁଡ଼ିଲା କେମିତି ? ତୁ ଏଠାକୁ ଆସିଲୁ କେମିତି ?"

ସେତେବେଳକୁ ସେଠାରେ ତମ୍ବୁ ପକା ହୋଇଯାଇଥାଏ । ସର୍ଦ୍ଦାର ପିଙ୍ଗଳକୁ ତମ୍ବୁ ଭିତରକୁ ନେଇଗଲେ । ପିଙ୍ଗଳ ଯେତେବେଳେ ବୁଝିଲା ଯେ ସେ ନବାବଙ୍କର ଜଣେ ବଡ଼ କର୍ମଚାରୀଙ୍କ ସମ୍ପର୍କରେ ଆସିଛି, ସେତେବେଳେ ତା' ମନରେ ଆଉ କିଛି ଦ୍ୱିଧା ରହିଲା ନାହିଁ । ସେ ଖାଲି ତା' ପରିବାର କଥା ଛାଡି କିପରି ବନ୍ଦୀ ହୋଇ ଦସ୍ୟୁ କପ୍ତାନ୍ ପାଖରେ ଗୁଲାମ ବନିଲା, କିପରି ସେ ସେଠାରୁ ମୁକ୍ତ ପାଇଲା, କିପରି ଦୁଇ ଜାହାଜ ଭିତରେ ସଂଘର୍ଷ ପୂର୍ବରୁ ସେ ଅନ୍ୟ ଗୁଲାମମାନଙ୍କର ନେତୃତ୍ୱ ନେଇ ଦସ୍ୟୁ କପ୍ତାନ୍ ବିରୁଦ୍ଧରେ ବିଦ୍ରୋହ କଲା, ସବୁ କଥା କହିଗଲା ।

"ଯେଉଁ ଜାହାଜ ସହ ସଂଘର୍ଷ ହେଲା, ସେଥିରେ କି ଗୁଲାମ ଥିଲେ ?" ସର୍ଦ୍ଦାର ପଚାରିଲା ।

"ସେମାନଙ୍କ କଥାବାର୍ତ୍ତାରୁ ତ ମୋର ସେଇଆ ମନେ ହେଲା ।" ପିଙ୍ଗଳ ଉତ୍ତର ଦେଲା ।

"ବେଶ୍, ବେଶ୍ । ଶୁଣ । ତମେ ଦଳେ ଲୋକଙ୍କର ନେତୃତ୍ୱ ନେଇ ଲଢ଼େଇ କରିଛ । ତେଣୁ ତମର ଦକ୍ଷତା ଅଛି । ତମକୁ ଆମେ ମିତ୍ର ହିସାବରେ ଗ୍ରହଣ କଲୁଁ । ମୋ ନାମ ହସନ୍ । ମୁଁ ଭୈରବନାଥ ନାମକ ଗୋଟାଏ ଭୀଷଣ ଦସ୍ୟୁ ସର୍ଦ୍ଦାରର ମୁକାବିଲା କରିବା ସକାଶେ ବାହାରିଛି । ଅଳ୍ପ ଦୂରରେ ଆମର ଗୋଟାଏ କିଲ୍ଲା ଅଛି । ଯେଉଁ ଲୋକଟିକୁ ଏଠାରେ ବାନ୍ଧି ମାରିଦିଆ ଯାଇଛି, ସେ ଲୋକ ସେହି ଦୁର୍ଗର ପ୍ରହରୀମାନଙ୍କ ଭିତରୁ ଜଣେ । ଦୁର୍ଗକୁ ଭୈରବନାଥ ଅଧିକାର କରି ନେଇଥିବା ଅସମ୍ଭବ ନୁହେଁ । ତାକୁ କିପରି କାବୁ କରାଯିବ, ତାହାହିଁ ମୋର ଚିନ୍ତା ।"

ଏହା କହି ସର୍ଦ୍ଦାର ଜଣେ ସୈନିକକୁ ଡାକି ପିଙ୍ଗଳକୁ ଦେଖାଇ କହିଲା, "ଏ ଯୁବକ ବର୍ତ୍ତମାନଠାରୁ ଆମ ଦଳର

ଅନ୍ତର୍ହିତ ହେଲେ । ଏହାଙ୍କୁ ନେଇ ଯାଇ ଶୀଘ୍ର ଖାଇବାକୁ ପିଇବାକୁ ଦିଅ । ଗୋଟାଏ ଓଟ ଦିଅ ।”

ଏ ନିର୍ଦ୍ଦେଶ ଶୁଣି ପିଙ୍ଗଳ ଦେହରେ ପ୍ରାଣ ପଶିଲା । ସୈନିକ ସଙ୍ଗେ ସଙ୍ଗେ ତାକୁ ନେଇ ଯାଇ ଖାଇବାକୁ ପିଇବାକୁ ଦେଲା । ପିଙ୍ଗଳର ଆନନ୍ଦ କହିଲେ ନସରେ ।

ସେ ଖାଇପିଇ ସାରି ଟିକିଏ ବିଶ୍ରାମ ପରେ ତାଜା ହୋଇ ଉଠିଲା । କଥା ହେଲା, ଅନେକ ଦିନ ପରେ ତା’ ମନରେ ପୁଣି ଦମ୍ଭର ସଞ୍ଚାର ହୋଇଥାଏ । ଜଳଦସ୍ୟୁ କପ୍ତାନ ହାତରେ ପ୍ରାଣ ଯାଇଥାନ୍ତା । କିନ୍ତୁ ସେଥିରୁ ସେ ବର୍ତ୍ତି ଗଲା । ପୁଣି ସମୁଦ୍ରରେ ବୁଡ଼ି ମଧ୍ୟ ମୃତ୍ୟୁ ଘଟିପାରିଥାନ୍ତା । ସେଥିରୁ ବି ବିଧାତା ତାକୁ ରକ୍ଷା କଲା । ଏ ଲୋକମାନେ ସନ୍ଦେହୀ ବା ନିଷ୍ଠୁର ହୋଇଥିଲେ ତାକୁ ମାରି ପକାଇଥାନ୍ତେ । କିନ୍ତୁ ତାହା ନକରି ଏମାନେ ତାକୁ ଅଭୟ ଦେଲେ ! ଏହା କ’ଣ କମ୍ ସୌଭାଗ୍ୟର କଥା ? ସେ ମନେ ମନେ ଈଶ୍ୱରଙ୍କୁ ପ୍ରଣାମ ଜଣାଇଲା । ତା’ ଆଖି ଛଳ ଛଳ ହେଲା ।

ଏହାପରେ ସର୍ଦ୍ଦାର ସେ ମୃତ ଦେହଟିକୁ ଗୋଟାଏ ଓଟ ପିଠିରେ ବାନ୍ଧି ସାଥିରେ ନେଇଯିବାର ବ୍ୟବସ୍ଥା କଲା । ତାକୁ କୂଳ ପାଖରେ ସମାଧି ଦେବା ଉଚିତ ହେବ ବୋଲି ସର୍ଦ୍ଦାର ବିଚାର କଲା ।

କିଛି ସମୟ ପରେ ତମ୍ବୁ ଉଠିଲା । ସୂର୍ଯ୍ୟାସ୍ତ ମୁହାଁ ସେମାନେ ଯାଇ କୂଳ ପାଖରେ ପହଞ୍ଚିଲେ । ସାଧାରଣତଃ କୂଳ ଆଗରେ ସର୍ବଦା ଲୋକ ଚଳପ୍ରଚଳ ହେଉଥାନ୍ତି । କିନ୍ତୁ ସବୁ ଶୁନ୍ଶାନ୍ ଦିଶୁଥିଲା ।

ସର୍ଦ୍ଦାର ଆଶ୍ଚର୍ଯ୍ୟ ହୋଇ ଥରେ କୂଳ ଆଡ଼େ ଓ ଥରେ ପିଙ୍ଗଳ ଆଡ଼େ ଅନାଇଲା । କୂଳର ଏ ପରିସ୍ଥିତିରେ ସ୍ୱାଭାବିକ ନୁହେଁ, ପିଙ୍ଗଳ ଆଡ଼େ ଅନାଇ ସେ ସେଇଆ ବୁଝାଇ ଦେଉଥିଲା ।

(କ୍ରମଶଃ)






# କନକ ସୁନ୍ଦରୀ

ନିଶା ଗରଜୁଥାଏ । ଛୁଟାକୁ ଛୁଟା ବର୍ଷା ଓ ବଜ୍ରଧ୍ୱନି ମଝିରେ ଶୁଭୁଥାଏ ଶ୍ୱାନ-ଶ୍ୱାପଦଙ୍କ ରଡ଼ି । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଯେ ନିଶାର୍ଦ୍ଧରେ ଏଭଳି ବିପଜ୍ଜନକ କାମ ହାତକୁ ନେଇଛ, ଏହା ପଛରେ ନିଶ୍ଚେ କାହାରି ପରାମର୍ଶ ରହିଛି । ସେ ଲୋକର ପ୍ରଭାବ ତମ ଉପରେ କେତେଦୂର ମୁଁ ଜାଣେନା । ଅନେକ ସମୟରେ ପ୍ରଭାବଶାଳୀ ମନ୍ତ୍ରୀଙ୍କ ପ୍ରଭାବ କଟାଇବା ରାଜାମାନଙ୍କ

## ବେତାଳ କଥା



ପକ୍ଷରେ କଠିନ ବୋଲି ଦେଖାଯାଇଛି । ତମକୁ ଗୋଟିଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ଅନେକ ଦିନ ତଳର କଥା । ଯଶୋବନ୍ତପୁର ରାଜ୍ୟର ରାଜା କୁଳଦୀପ ଜଣେ ଦକ୍ଷ ଶାସକ ଥିଲେ । ତାଙ୍କ ସୌଭାଗ୍ୟକୁ ତାଙ୍କୁ ଏପରି ଜଣେ ମନ୍ତ୍ରୀ ଜୁଟିଥିଲେ, ଯିଏ ଥିଲେ ବୁଦ୍ଧିମାନ ତଥା ଦୂରଦର୍ଶୀ । ରାଜା ଓ ମନ୍ତ୍ରୀଙ୍କ ଭିତରେ ଗଭୀର ସଖ୍ୟ ଥିଲା । ଦୁହେଁ ପରସ୍ପରକୁ ଠିକ୍ ଭାବରେ ବୁଝୁଥିଲେ ।

ରାଜା କୁଳଦୀପ ବୃଦ୍ଧ ହେବା ସଙ୍ଗେ ସଙ୍ଗେ ଗୋଟିଏ କଠିନ ବେମାରରେ ପଡିଲେ । ସେ ବୁଝିପାରିଲେ ଯେ ତାଙ୍କର ଆଉ ବେଶିଦିନ ବଞ୍ଚିବାର ନାହିଁ । ସେ ଯୁବରାଜ ରବିଚନ୍ଦ୍ରଙ୍କୁ ଡାକି ଏକାନ୍ତରେ କହିଲେ, "ବାପା, ମୁଁ ପରପାରିକୁ ଚାଲିଲି । ପ୍ରଜାକୁଳଙ୍କ ହିତ ପାଇଁ ମୁଁ ଯାହା ପାରିଛି କରିଛି । ତୁମେ ସେହି ପରମ୍ପରାରୁ ଟଳିବ ନାହିଁ । ତୁମ ପାଇଁ ମୁଁ ଗୋଟିଏ ଦୁର୍ଲଭ ସମ୍ପଦ ଛାଡ଼ି ଯାଉଛି । ତାହା ରାଜ୍ୟ ନୁହେଁ, ଭଣ୍ଡାରଘର ନୁହେଁ, ମନ୍ତ୍ରୀ ସୁକୀର୍ତ୍ତି । ଯେଯାଏ ସେ ଜୀବିତ ଅଛନ୍ତି, ତାଙ୍କ ପରାମର୍ଶ ମାନି ଚଳିବ ।"

ଏହା କହିବାର ଅଳ୍ପ ସମୟ ଭିତରେ ରାଜାଙ୍କର ମୃତ୍ୟୁ ହେଲା । ପ୍ରଥା ଅନୁସାରେ ରବିଚନ୍ଦ୍ର ସଙ୍ଗେ ସଙ୍ଗେ ସିଂହାସନରେ ବସି ପିତାଙ୍କ ସତ୍କାରର ସବୁ ପ୍ରକାର ବ୍ୟବସ୍ଥା କଲେ । ତା'ପରେ ବିଧିବଦ୍ଧ ଭାବରେ ତାଙ୍କର ଅଭିଷେକ ହେଲା । ଅଭିଷେକ ପରେ ପରେ ନୂଆ ରାଜା ତାଙ୍କ ମନୋନୀତ ମନ୍ତ୍ରୀଙ୍କ ନାମ ଘୋଷଣା କରିବା କଥା । ରାଜା ରବିଚନ୍ଦ୍ର ସୁକୀର୍ତ୍ତିଙ୍କୁହିଁ ତାଙ୍କ ମନ୍ତ୍ରୀ ରୂପେ ଘୋଷଣା କଲେ ।

କିଛିଦିନ ଗଲା । ଦିନେ ରାଜା ମନ୍ତ୍ରୀଙ୍କୁ ଗୋପନରେ କହିଲେ, "ମନ୍ତ୍ରୀବର, ଆମ ପଡ଼ୋଶୀ ରାଜ୍ୟ ସୋମଗଡ଼ର ରାଜା ଜୟପାଳ କ୍ରମେ ବେଶି ବେଶି ଶସ୍ତ୍ର ସଞ୍ଚୟ କରୁଛନ୍ତି । ଆମେ ତାଙ୍କୁ ଆକ୍ରମଣ କରି କାବୁ କରିଦେବା ଠିକ୍ ହେବ ନାହିଁକି ?"

ମନ୍ତ୍ରୀ ନୀରବରେ କିଛିକ୍ଷଣ ଚିନ୍ତା କରି କହିଲେ, "ମହାରାଜ, ବର୍ତ୍ତମାନ ଆମେ ଯୁଦ୍ଧଯାତ୍ରା କରିବା ନାହିଁ ।"

"କାହିଁକି ?" ରାଜା ପ୍ରଶ୍ନ କଲେ ।

"ଜୟପାଳ ଆମର କ୍ଷତି କରିବାକୁ ଚାହାନ୍ତି ବୋଲି କୌଣସି ପ୍ରମାଣ ଆମ ପାଖରେ ନାହିଁ । ତେଣୁ ତାଙ୍କ ରାଜ୍ୟ ଆକ୍ରମଣ କରିବାର ଏକମାତ୍ର ଯୁକ୍ତି ତାଙ୍କୁ ଅଧିକାର କରିବା । ଯଦି ଆମେ ପରାସ୍ତ ହେବା, ତେବେ ଆମର ସେହି ଦୁର୍ବଳତାର ସୁଯୋଗ ନେଇ ଅନ୍ୟ ଯେ କୌଣସି ରାଜ୍ୟ ଆମକୁ ଆକ୍ରମଣ କରି ବିପର୍ଯ୍ୟସ୍ତ କରିଦେବ ।" ମନ୍ତ୍ରୀ ସୁକୀର୍ତ୍ତି କହିଲେ ।



ମନ୍ତ୍ରୀଙ୍କ ଯୁକ୍ତି ରାଜାଙ୍କୁ ଭଲ ଲାଗିଲା ନାହିଁ । ତେବେ ପିତାଙ୍କ ଉପଦେଶ ମନେ ପକାଇ ସେ ତାଙ୍କ ପରାମର୍ଶ ଗ୍ରହଣ କଲେ ଓ ଅଭିଯାନରୁ କ୍ଷାନ୍ତ ହେଲେ ।

କେଇଦିନ ପରେ ଥରେ ସେ ଶୀକାର କରିବାକୁ ବାହାରିଛନ୍ତି, ମନ୍ତ୍ରୀ କହିଲେ, "ମହାରାଜ, ଆଜି ବଣକୁ ଯା'ନ୍ତୁ ନାହିଁ ।"

ରାଜାଙ୍କ ଉତ୍ସାହରେ ଭଟ୍ଟା ପଡିଗଲା । ସେ ଆଶ୍ଚର୍ଯ୍ୟ ଓ ସାମାନ୍ୟ ବିରକ୍ତ ହୋଇ ପଚାରିଲେ, "କାହିଁକି ଯିବି ନାହିଁ ?"

"ମେଘ ଓ ପବନର ଗତିରୁ ମନେହୁଏ ଚାରିଘଣ୍ଟା ଭିତରେ ଘୋର ବର୍ଷା ହେବ । ବଣ ପାଖରେ ଆଶ୍ରୟ ନେଲାଭଳି କୌଣସି ସ୍ଥାନ ନାହିଁ । ତା'ଛଡ଼ା ବର୍ଷାରେ ବା ଶୀକାର କ'ଣ କରିବେ ?" ମନ୍ତ୍ରୀ କହିଲେ ।

ରବିଚନ୍ଦ୍ର ଅନିଚ୍ଛା ସତ୍ତ୍ୱେ ପ୍ରାସାଦ ଭିତରକୁ ଫେରିଗଲେ । କିନ୍ତୁ ପାଞ୍ଚଘଣ୍ଟା ବିତିଯିବା ସତ୍ତ୍ୱେ ବର୍ଷା ନ ହେବାରୁ ସେ ମନ୍ତ୍ରୀଙ୍କୁ ଡକାଇ କହିଲେ, "ଆପଣ ମୋ ଶୀକାର ଯିବା ବନ୍ଦ କଲେ । ଅଥଚ ବର୍ଷା ହେଲା ନାହିଁ ।"

ମନ୍ତ୍ରୀ କହିଲେ, "ମହାରାଜ, ମୋ ଜ୍ଞାନ ବୁଦ୍ଧି ଅନୁସାରେ ମୁଁ ଯାହା ଠିକ୍ ଭାବିଲି କହିଲି । ସର୍ବଦା ମୁଁ ନିର୍ଭୁଲ ପ୍ରମାଣିତ ହେବି ବୋଲି କହିପାରିବି ନାହିଁ । ତେବେ ବର୍ଷା ସିନା ରାଜଧାନୀରେ ହୋଇ ନାହିଁ, ବଣ ମୂଲକରେ ହୋଇଥିବ ବୋଲି ମୋର ବିଶ୍ୱାସ ।"



ରାଜା ବଣି ମୂଲକକୁ ଲୋକ ପଠାଇ ଖବର ନେଲେ । ବାସ୍ତବିକ୍ ବଣିରେ ଭୀଷଣ ବର୍ଷା ହୋଇଯାଇଥିଲା । ପାହାଡ଼ିଆ ନଦୀ ଉଚ୍ଛୁଳୁଥିଲା ।

ତେଣିକି ରାଜା ମନ୍ତ୍ରୀଙ୍କ କଥା ଉପରେ କଥା କହନ୍ତି ନାହିଁ ।

ଛଅମାସ ପରେ ହଠାତ୍ ଦିନେ ମନ୍ତ୍ରୀ ରାଜାଙ୍କୁ ଗୋପନରେ କହିଲେ, "ମହାରାଜ, ସୋମଗଡ଼ର ରାଜା ଜୟପାଳ ଆମ ରାଜ୍ୟ ଆକ୍ରମଣ କରିବା କଥା ଭାବୁଛନ୍ତି ବୋଲି ଗୁପ୍ତଚରଠୁଁ ଖବର ପାଇଲି ।"

"ମନ୍ତ୍ରୀବର! ମୁଁ ତ ସେଥିପାଇଁ ତାଙ୍କ ରାଜ୍ୟ ଆକ୍ରମଣ କରିବାକୁ କହୁଥିଲି । ଏବେ ବିଳମ୍ବରେ ସେଇଆ କରିବାକୁ ହେବ!" ଅସନ୍ତୁଷ୍ଟ ଭାବରେ ରାଜା କହିଲେ ।

"ନା, ମହାରାଜ, ଯୁଦ୍ଧ କଲେ ବହୁତ କ୍ଷତି ହେବ ।" ମନ୍ତ୍ରୀ କହିଲେ ।

ମନ୍ତ୍ରୀଙ୍କ ମନ୍ତବ୍ୟ ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ ବିଦ୍ରୁପ କରି ପଚାରିଲେ, "ତେବେ କ'ଣ ବିନା ଯୁଦ୍ଧରେ ଆମେ ତାଙ୍କ ଅଧୀନତା ସ୍ୱୀକାର କରିନେବା ?"

ମନ୍ତ୍ରୀ କିନ୍ତୁ ଶାନ୍ତ କଣ୍ଠରେ କହିଲେ, "ନା ମହାରାଜ, ମୋର ପ୍ରସ୍ତାବ ପୂରାପୂରି ଭିନ୍ନ । ରାଜା ଜୟପାଳଙ୍କର କନକସୁନ୍ଦରୀ ନାମରେ ଏକ ସୁନ୍ଦରୀ ଓ ବୁଦ୍ଧିମତୀ କନ୍ୟା ଅଛି । ଆପତ୍ତି ନଥିଲେ ତାଙ୍କ ସହ ଆପଣଙ୍କ ବିବାହର ପ୍ରସ୍ତାବ ପଠାଇବା ।"

ରବିଚନ୍ଦ୍ର କନକସୁନ୍ଦରୀଙ୍କ ରୂପଗୁଣ ବିଷୟରେ ବହୁତ ଶୁଣିଥିଲେ । ମନ୍ତ୍ରୀଙ୍କ ପ୍ରସ୍ତାବରେ ସେ ସାଦର ସମ୍ମତି ଦେଲେ ।

ଜୟପାଳ ରବିଚନ୍ଦ୍ରଙ୍କ ବିବାହ ପ୍ରସ୍ତାବ ପାଇ ବହୁତ ଖୁସି ହେଲେ । ସେ ଅନ୍ତଃପୁରକୁ ଯାଇ ରାଜକନ୍ୟାଙ୍କ ମତ ଚାହିଁଲେ ।

"ବାପା, ଆପଣ ପରା ଯଶୋବନ୍ତପୁର ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲେ ? ହଠାତ୍ ବାହାଘର ପ୍ରସଙ୍ଗ କିପରି ଉଠିଲା ? ମୋତେ ତ ଆଶ୍ଚର୍ଯ୍ୟ ଲାଗୁଛି ।" ରାଜକନ୍ୟା କହିଲେ ।

"ଜେମା, ମୁଁ ଯଶୋବନ୍ତପୁର ଆକ୍ରମଣ କରିବାକୁ ଉଦ୍ୟତ ହେବାର କାରଣ ଯୁବକ-

ରାଜା ରବିଚନ୍ଦ୍ର ପ୍ରତି ମୋର ଭୟ । ସେ କାଳେ ପ୍ରଥମେ ଆମ ରାଜ୍ୟ ଆକ୍ରମଣ କରିବେ । କିନ୍ତୁ ବର୍ତ୍ତମାନ ଦେଖୁଛୁ ମୋ ଜାମାତା ହେବା ତାଙ୍କ ଇଚ୍ଛା !" ରାଜା କହିଲେ ।

"ଆପଣ ଯେତେବେଳେ ତାଙ୍କ ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଲେ, ସେତିକି-ବେଳେ ସେପକ୍ଷ୍ ବିବାହ ପ୍ରସ୍ତାବ ଆସିଗଲା, ଏ ଯୋଗାଯୋଗ ଅଦ୍ଭୁତ ଲାଗୁନାହିଁ ?" ରାଜକନ୍ୟା ପଚାରିଲେ ।



ରାଜା ଜୟପାଳ ଚିନ୍ତା କରି କହିଲେ, "ଯଶୋବନ୍ତପୁରର ମନ୍ତ୍ରୀ ସୁକୀର୍ତ୍ତି ଅତ୍ୟନ୍ତ ବୁଦ୍ଧିମାନ ଓ ବିବେକୀ । ତାଙ୍କର ପରାମର୍ଶ କ୍ରମେ ଏହା ହୋଇଥାଇ ପାରେ ।"

ରାଜକନ୍ୟା କହିଲେ, "ବାପା, ମୁଁ ଶୁଣିଛି ରାଜା ରବିଚନ୍ଦ୍ର ମନ୍ତ୍ରୀଙ୍କ ଅନୁମତି ବିନା ଶିକାର କରିବାକୁ ବି ଯାଆନ୍ତି ନାହିଁ । ଯିଏ ମନ୍ତ୍ରୀ କଥାରେ ସବୁ କରେ, ସିଏ କାଲି ମନ୍ତ୍ରୀ କଥାରେ ମୋତେ ପରିତ୍ୟାଗ ନ କରିବ କାହିଁକି ? ଆପଣ କହି ପଠାନ୍ତୁ, ମୋର ସର୍ତ୍ତ ହେଲା ସେ ତାଙ୍କ ମନ୍ତ୍ରୀଙ୍କୁ ନିର୍ବାସିତ କଲେ ମୋ ସହ ବିବାହ ହୋଇ ପାରିବ !"

ରାଜା ଜୟପାଳ ସେହି ମର୍ମରେ ସମ୍ବାଦ ପଠାଇଲେ । ତାହା ଶୁଣିବା ମାତ୍ରେ ରାଜା ରବିଚନ୍ଦ୍ର ଉତ୍ତେଜିତ ହୋଇ କହିଲେ, "ଏଭଳି ସର୍ତ୍ତ ଘୋର ଅପମାନଜନକ !"

କିନ୍ତୁ ମଂତ୍ରୀ ସୁକୀର୍ତ୍ତି କହିଲେ, "ମହାରାଜ, ମୁଁ ବୃଦ୍ଧ ହେଲିଣି । ମୋତେ ଅନୁମତି ଦିଅନ୍ତୁ, ମୁଁ ଆପଣଙ୍କ ଅଧୀନରେ ଥିବା କ୍ଷୁଦ୍ର ଦ୍ୱୀପ ସାଗରପୁରୀରେ ଯାଇ ମୋର ଶେଷ ଜୀବନ ଯାପନ କରେଁ ।"

"ଅସମ୍ଭବ ! ଆପଣ ମୋର ମନ୍ତ୍ରୀ । ଆପଣଙ୍କ ରହିବା ନ ରହିବା ଉପରେ କାହାରି କିଛି କହିବାର ଅଧିକାର ନାହିଁ । ସେନାପତି ! ଯୁଦ୍ଧଯାତ୍ରା ପାଇଁ ପ୍ରସ୍ତୁତ ହୁଅ !" ରାଜା ରବିଚନ୍ଦ୍ର ହୁକୁମ ଦେଲେ ।

ତିନିଦିନ ପରେ ଯଶୋବନ୍ତପୁରର ସେନାନୀ ଯାଇ ସୋମଗଡ଼ ରାଜ୍ୟ ସୀମାନ୍ତରେ ପହଞ୍ଚିଲେ । ତତ୍‌କ୍ଷଣାତ୍ ରାଜନଗରରୁ ଖବର ଆସିଲା,

ରାଜକନ୍ୟା ବିନା ସର୍ତ୍ତରେ ବିବାହ ପାଇଁ ପ୍ରସ୍ତୁତ !

ରବିଚନ୍ଦ୍ର ସେନାବାହିନୀ ପ୍ରତ୍ୟାହାର କରିନେଲେ । ମହା ସମାରୋହରେ କନକସୁନ୍ଦରୀଙ୍କ ସହ ତାଙ୍କ ବିବାହ ସମ୍ପନ୍ନ ହେଲା ।

ଟିକିଏ ନୀରବ ରହି ବେତାଳ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! କନକସୁନ୍ଦରୀଙ୍କ ବ୍ୟବହାର ନିହାତି ପିଲାଳିଆ ନୁହେଁ କି? ସେ ବିବାହ ପାଇଁ ସର୍ତ୍ତ ରଖିଲେ, ଅଥଚ ସର୍ତ୍ତ ପୂରଣ ନ ହେବା ସତ୍ତ୍ୱେ ବିବାହ ସକାଶେ ରାଜି ହେଲେ କିପରି? ଭୟଭୀତ ହୋଇ ତ? ଏପରି ସର୍ତ୍ତର କିଛି ମାନେ ହୁଏ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ରାଜକୁମାରୀ କନକସୁନ୍ଦରୀ ଅତ୍ୟନ୍ତ ବୁଦ୍ଧିମତୀ । ପ୍ରକୃତରେ ସେ ଯାହା ଜାଣିବାକୁ ଚାହୁଁଥିଲେ, ତାହା ଜାଣିଗଲେ । ରାଜା ରବିଚନ୍ଦ୍ରଙ୍କର ନିଜର ବ୍ୟକ୍ତିତ୍ୱ ଅଛି ନା ସର୍ବଦା ମନ୍ତ୍ରୀଙ୍କ କଥାରେ ଚଳନ୍ତି, ତାହା ଜାଣିବା ଥିଲା ତାଙ୍କର ଉଦ୍ଦେଶ୍ୟ । ତାଙ୍କ ଯୁଦ୍ଧଯାତ୍ରା ପ୍ରମାଣ କରୁଛି ଯେ ଆବଶ୍ୟକ ହେଲେ ସେ ନିଜ ସିଦ୍ଧାନ୍ତ ଅନୁସାରେ କାର୍ଯ୍ୟ କରିବେ ।

"ରାଜକନ୍ୟା ଭୟଭୀତ ହେବାର କାରଣ ନ ଥିଲା । କାରଣ ସୋମଗଡ ତ ଯଶୋବନ୍ତପୁର ଆକ୍ରମଣ କରିବା ନିମନ୍ତେ ପ୍ରସ୍ତୁତ ହୋଇ ଯାଇଥିଲା । ବରଂ ରବିଚନ୍ଦ୍ର ହଠାତ୍ ନିଜ ସୈନ୍ୟବାହିନୀ ଧରି ଆସିଥିବାରୁ ଯଥେଷ୍ଟ ପ୍ରସ୍ତୁତ ଅଭାବରୁ ହାରି ଯିବାର ସମ୍ଭାବନା ଥିଲା ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଜିଦ୍

ଗଣେଶ ତ୍ରିପାଠୀ ଘରୁ ବାହାରିଗଲା ବେଳେ ସ୍ତ୍ରୀ କମଳାକୁ କହିଲା, "ଶୁଣ, ଯାଉଛି ବହୁତ ଦୂର ଗାଁକୁ । ଯଦି କାମ ଶେଷ ହେବ ବେଳକୁ ବେଶି ରାତି ହୋଇଯିବ, ତେବେ ରାତିରେ ନ ଆସି ଆଗାମୀ କାଲି ସକାଳେ ଆସି ଦୁଇପହର ସରିକି ପହଞ୍ଚିବ ।"

କମଳା ହସିଲା । ସେ ଜାଣିଥିଲା ଯେ ଗଣେଶ ଅନ୍ଧକାରକୁ ଭୀଷଣ ଡରେ । ସେ କହିଲା, "ତମେ କାଲି ଦୁଇପହର ବେଳକୁହିଁ ଆସି ପହଞ୍ଚିବ!"

"କାହିଁକି? ଯଦି ସହଳ କାମ ଶେଷ ହୋଇଯିବ ତେବେ ସେଠାରୁ ସଞ୍ଜବେଳକୁ ବାହାରି ରାତି ଦୁଇପହର ବେଳକୁ ତ ଏଠି ପହଞ୍ଚିଯିବ!" ଗଣେଶ କହିଲା ।

"ସଞ୍ଜବେଳକୁ କାମ ଶେଷ ହେଲେ ବି ତମେ ବାଟକୁ ବାହାରିବ ନାହିଁ ବୋଲି ମୁଁ ଜାଣେ!" ତା' ସ୍ତ୍ରୀ କହିଲା ।

"ମୋତେ ଡରୁଆ ଭାବିଛ? ଦେଖିବ, ମୁଁ ଦୁଇପହର ରାତିକୁହିଁ ଆସିବି ।" ଏହା କହି ଗଣେଶ ବାହାରିଗଲା ।

ସେ ଗାଁ ମୁଣ୍ଡରେ ପହଞ୍ଚିଛି, ଦେଖିଲା ଯାହା ଘରକୁ ସିଏ ଯାଉଥିଲା ସେହି ରବି ତା' ସହ ଦେଖା କରିବାକୁ ତା' ଘରକୁ ଆସୁଛି । ତେଣୁ ସେ ଆଉ ଦୂରକୁ ଯିବାର ଆବଶ୍ୟକତା ପଡ଼ିଲା ନାହିଁ । ଦୁଇ ବନ୍ଧୁ ଜଣେ ଘନିଷ୍ଠ ବନ୍ଧୁ ସୁରେଶ ଘରେ ପହଞ୍ଚିଲେ । ସୁରେଶ ଘର ଗାଁ ମୁଣ୍ଡରେ । ସୁରେଶର ସ୍ତ୍ରୀ ଓ ପିଲାପିଲି ଅନ୍ୟତ୍ର ଯାଇଥାନ୍ତି । ସୁରେଶ ଏକା ଘରେ ଥାଏ । ଗଣେଶ ମନେ ମନେ ଭାବିଲା, "ମୁଁ ଆଜି ଦିନଯାକ ଏଇଠି ରହିବି । ରାତି ହେଲେ ଯାଇ ଘରକୁ ଫେରିବି । କମଳା ବୁଝିବ ଯେ ଅନ୍ଧାରକୁ ମୋର ଡର ନାହିଁ ।"

"ବସୁନ୍ଧରା"

ସେମାନେ ଆଉ ଜଣକୁ ଡାକି ଆଣିଲେ । ଚାରିଜଣ ବସି ତାସ ଖେଳିଲେ । ଖେଳ ଚାଲିଛି ତ ଚାଲିଛି କେତେବେଳେ ରାତି ଅଧ ହେଲାଣି କାହାରି ହୋସ୍ ନାହିଁ । ସମସ୍ତଙ୍କୁ ଭୀଷଣ ନିଦ ଲାଗି ଆସୁଥାଏ । ବାହାରେ କଟିମିଟି ଅନ୍ଧାର । ଗଣେଶ ଏକା ଯିବାକୁ ସାହସ କଲା ନାହିଁ କି କାହାକୁ ଡାକିଲେ କେହି ସାଥିରେ ଯିବା ଅବସ୍ଥାରେ ନ ଥିଲେ । ସମସ୍ତେ ଶୋଇ ପଡିଲେ । ଭୋର ଭୋର ପହଞ୍ଚି ରାତିଯାକ ଚାଲି ଆସିଛି ବୋଲି କହିବାକୁ ସ୍ଥିର କରି ସିଏ ବି ଶୋଇ ପଡିଲା ।

ନିଦ ଭାଙ୍ଗିବା ବେଳକୁ ଦିନ ପହରେ । ଗଣେଶ ବଡ଼ ହତାଶ ହେଲା । ତା'ର ସମସ୍ତ ଯୋଜନା ପାଣି ଫାଟିଗଲା । କିନ୍ତୁ ଏବେ ଘରକୁ ଚାଲିଗଲେ ତା' ସ୍ତ୍ରୀର କଥା ରହିବ ଓ ସେ ଗଣେଶକୁ ହସି ଉଡ଼ାଇବ । ତା' ଛଡ଼ା ତା'ର ଯେ ଅନ୍ଧକାରକୁ ପ୍ରକୃତରେ ଭୟ ଅଛି ତାହା ସହଜରେ ପ୍ରତିପାଦିତ ହୋଇଯିବ । ବହୁତ ଭାବି ଭାବି ଠିକ୍ କଲା ଯେ ସେ ଏପରି ସମୟରେ ଘରେ ପହଞ୍ଚିବ ଯେ ତା' ସ୍ତ୍ରୀ ତାକୁ ସାହାସୀ ବୋଲି ମାନି ନେବାକୁ ବାଧ୍ୟ ହେବ । ଦିନଯାକ ସେଠି ଅପେକ୍ଷା କରି ସନ୍ଧ୍ୟାବେଳେ ଯାଇ ଘରେ ପହଞ୍ଚିଲା ।

"କ'ଣ ହେଲା ?" କମଳା ହସି ଦେଇ ପଚାରିଲା ।

"ହେବ କ'ଣ ? ତମେ କହିଥିଲ ମୁଁ ଦିନ ଦୁଇପହରେ ଆସି ପହଞ୍ଚିବି । ମୁଁ କହିଥିଲି ରାତି ଦୁଇପହରେ ଆସି ପହଞ୍ଚିବି । ମୁଁ କିନ୍ତୁ ପହଞ୍ଚିବା ବେଳକୁ ଦିନ ହୋଇଗଲା । ଭାବିଲି ମୁଁ ଯଦି ମୋ ନିଜ କଥା ଅନୁସାରେ ଆସି ନପାରିଲି, ତମ କଥା ଅନୁସାରେ ଏବେ କାହିଁକି ଆସିବି ? ତେଣୁ ଅପେକ୍ଷା କରି ସଞ୍ଜିବେଳକୁ ଆସୁଛି ।"

କମଳା କ'ଣ କହିବ ବୁଝି ପାରିଲା ନାହିଁ । ଗଣେଶର ପିଲାଳିଆ ଜିଦ ଦେଖି ହସ ଚାପିରଖିଲା ମାତ୍ର !





# ବଡ଼ ବୋକା

ଚନ୍ଦପୁର ଗ୍ରାମର ଜମିଦାର ଘନୁ ଚୌଧୁରୀଙ୍କର ସଉକ୍ ହେଲା ସେ ଲୋକଙ୍କୁ ଡାକି ଛୋଟ ଛୋଟ ପରୀକ୍ଷା କରନ୍ତି ଏବଂ ସଂପୂର୍ଣ୍ଣ ସଫଳ ହୋଇଥିବା ଲୋକଙ୍କୁ ପୁରସ୍କାର ଦିଅନ୍ତି । ଥରେ ସେ ଜାଣିବାକୁ ଚାହିଁଲେ ଗ୍ରାମରେ ସବୁଠାରୁ ବୋକା କିଏ ।

ଦିନେ ଚୌଧୁରୀ କେତେକ ଲୋକଙ୍କୁ ଡାକି ପଚାରିଲେ ଯେ ତାଙ୍କ ଗ୍ରାମରେ ସବୁଠାରୁ ବୋକା କିଏ । ଉତ୍ତରରେ ସମସ୍ତେ କହିଲେ, "ଆମ ଗ୍ରାମରେ ରାମ ଭୀମ ଓ ସୋମ ନାମକ ତିନିଜଣ ଅଛନ୍ତି; ସେମାନେ ବୋକାମିରେ ଏକରୁ ଆରେକ ବଳି ।" ଏକଥା ଶୁଣି ଚୌଧୁରୀ ଭାରି ଖୁସି କାରଣ ତାଙ୍କ କାମ ସହଜ ହୋଇଗଲା ।

ଦିନେ ଚୌଧୁରୀ ସେ ତିନିଜଣଙ୍କୁ ଡାକି କହିଲେ, "ମୁଁ ଗ୍ରାମର ଲୋକମାନଙ୍କଠାରୁ ଶୁଣିଛି କି ତମେ ତିନିଜଣ ଖୁବ୍ ବୋକା । କିନ୍ତୁ ମୁଁ ଜାଣିବାକୁ ଚାହୁଁଛି ଯେ ତୁମମାନଙ୍କ ମଧ୍ୟରୁ ସବୁଠାରୁ ବୋକା କିଏ? ମୁଁ ତୁମମାନଙ୍କ ପାଇଁ ଛୋଟ ଏକ ପରୀକ୍ଷା ରଖିଛି । କ'ଣ ତମେମାନେ ପ୍ରସ୍ତୁତ ତ?"

ଚୌଧୁରୀଙ୍କ ମୁହଁରୁ ଏକଥା ଶୁଣି ସେମାନେ ଖୁବ୍ ଆଶ୍ଚର୍ଯ୍ୟ ହେଲେ । କାରଣ ସେମାନେ ବୁଝିପାରିଲେ ନାହିଁ ଯେ ଏପରି "ବଡ଼ ବୋକା" ନିର୍ଣ୍ଣୟ କରିବାର ଆବଶ୍ୟକତା କେଉଁଠାରୁ ଆସି ତାଙ୍କ ଉପରେ ପଡ଼ିଲା । ପୁଣି ସେମାନେ ଭାବିଲେ କି ପ୍ରକାର ପରୀକ୍ଷା ହେବ ସେ ବିଷୟରେ କିଛି ନ ଜାଣି ନ ଶୁଣି ସ୍ୱୀକୃତ କିପରି ବା ଦେବେ । ତେଣୁ ତିନିଜଣ ଏକ ସ୍ୱରରେ କହିଲେ, "କୁହନ୍ତୁ ତ ପରୀକ୍ଷାଟି କ'ଣ?"

ଚୌଧୁରୀ କହିଲେ, "ତୁମ ତିନିଜଣଙ୍କୁ କୌଣସି ସାହାଯ୍ୟ ବିନା ମରୁଭୂମିରେ ଛାଡ଼

ସୁରେନ୍ଦ୍ର

ଦିଆଯିବ । ଯିଏ ପ୍ରଥମେ ଲୋକଟି ଆସିବ ସେ ଦଶଟଙ୍କା ପୁରସ୍କାର ପାଇବ ।”

“ବୋକା ଲୋକ ସବୁ ପାଇଁ ପ୍ରସ୍ତୁତ । ଆପଣ ଯଦି ମୋ ପାଇଁ ସ୍ୱତଂତ୍ର ଯୋଡା ବନାଇ ଦେବେ ତେବେ ମୁଁ ଆପଣଙ୍କ ପରୀକ୍ଷା ପାଇଁ ପ୍ରସ୍ତୁତ ହେବି ।” ଭୀମ ଉତ୍ତର ଦେଲା ।

“ମୁଁ ସେପରି କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ରହସ୍ୟ ଏବେ କହିବି ନାହିଁ । କିନ୍ତୁ ଆପଣଙ୍କର ଜଣେ ବିଶ୍ୱାସୀ ଲୋକକୁ ମୋ ସହିତ ପଠାନ୍ତୁ ।” କହିଲା ଭୀମ ।

“ସଫା ସଫା କୁହ ତୁମର ଉଦ୍ଦେଶ୍ୟ କ’ଣ ?” ଗ୍ରୈ ଧୁରୀ ପଚାରିଲେ ।

“ବୋକା ଲୋକ ନିଜ ପାଖରେ ସବୁବେଳେ ସହାୟତା ପାଇଁ ଜଣେ ଚାଲାକ୍ ଲୋକକୁ ରଖିଥାଏ । ତା’ଛଡ଼ା ନିଜର ବିଶ୍ୱାସୀ ବ୍ୟକ୍ତିକୁ କେବେ ବି ଇଚ୍ଛା କରି ଆପଣ ବେଶି ବିପଦରେ ପକାଇବେ ନାହିଁ । ତେଣୁ ଏ ପରୀକ୍ଷା ପାଇଁ ମୁଁ ଏପରି ସର୍ତ୍ତ ଦେଲି ।” ଭୀମ କହିଲା ।

ଏବେ ଗ୍ରୈ ଧୁରୀ ସୋମକୁ ଚାହିଁ କହିଲେ, “କୁହ ତୁମର ବିଚାର କ’ଣ ?”

ସୋମ କହିଲା, “ଏକଥା ସତ ଯେ ବୋକାମାନେ ବେଶି କଷ୍ଟ ପାଆନ୍ତି । କିନ୍ତୁ ମୁଁ ବୋକା ହେଲେ ମଧ୍ୟ ଦୁଃଖ ଓ ବିପଦ ପାଖକୁ ଯିବାର ମୋର ସାହସ ନାହିଁ । ତା’ ପୁଣି ମାତ୍ର ଦଶଟଙ୍କାର ପ୍ରଲୋଭନରେ । ତେଣୁ ମୁଁ ସେ ପରୀକ୍ଷା ପାଇଁ ଆଦୌ ପ୍ରସ୍ତୁତ ନୁହେଁ ।”

ଏ ଉତ୍ତର ଶୁଣି ଗ୍ରୈ ଧୁରୀ ନିଜେ ବୁଝିଗଲେ ଯେ ବୋକାମୀର ଅର୍ଥ କ’ଣ । ସେ ଭାବିଲେ ବଡ଼ ବୋକା ବାହାର କରିବାରେ ଦଶଟଙ୍କା ପୁରସ୍କାର ଘୋଷଣା କରିବା ଆଉ ଏକ ବୋକାମୀ । ତେଣୁ ସେସବୁ ପରୀକ୍ଷା କରିବା କଥା ସେ ମନରୁ ସମ୍ପୂର୍ଣ୍ଣ ତ୍ୟାଗ କରିଦେଲେ । ତାଙ୍କର ଟଙ୍କା ରହିଗଲା । ସେ ଏପରି ଏକ ପରୀକ୍ଷା କରିବାକୁ ଯାଉଥିଲେ ବୋଲି ନିଜେ ଭାବିଲେ ଯେ ସେହିଁ ସବୁଠାରୁ ବଡ଼ ବୋକା ।



# ବଦଭ୍ୟାସ

କୌଶିକ ମହାପଣ୍ଡିତ ସଦାନନ୍ଦଙ୍କର ଥିଲେ ଏକମାତ୍ର ପୁତ୍ର । ତା'ର ବିବାହ ପାଇଁ ବୟସ ହୋଇଥିଲେ ସୁଦ୍ଧା ତାଙ୍କୁ ଝିଅ ଦେବାକୁ କେହି ଆଗ୍ରହ ପ୍ରକାଶ କରୁ ନଥିଲେ । ଦିନେ ସଦାନନ୍ଦଙ୍କର ପିଲାବେଳର ସାଥି ସୋମେଶ୍ୱର ତାଙ୍କ ଝିଅ ପାଇଁ ବର ଖୋଜି ଖୋଜି ଆସି ସେଠାରେ ପହଞ୍ଚିଲେ । ଦୁଇ ବନ୍ଧୁ ଦିନେ ନାନା ଗଳ୍ପ କରୁ କରୁ ସୋମେଶ୍ୱର ତାଙ୍କ କନ୍ୟାର ବିବାହ କଥା ଉଠାଇଲେ । ସେ କହିଲେ, "ଆଉ ଏତେ ଖୋଜା ଖୋଜି କାହିଁକି ? ତୁମର ତ ବୋହୂ ଦରକାର ମୋର ତ ଜ୍ୱାଇଁ ଦରକାର, ଚାଲ ଆମ ପୁଅ ଝିଅ ଦୁହିଁଙ୍କୁ ବାହାଦେବା । କିନ୍ତୁ ମୁଁ ଶୁଣିଛି ଯେ କୌଶିକକୁ କେହି ଝିଅ ଦେବାକୁ ଚାହାନ୍ତି ନାହିଁ । କାରଣ କ'ଣ ? ତାର କ'ଣ କିଛି ବଦଭ୍ୟାସ ଅଛି କି ?"

"ତୁମେ ସେକଥା ତାକୁହିଁ କାହିଁକି ପଚାରୁନାହଁ ?" ସଦାନନ୍ଦ ଅଳ୍ପ ହସି କହିଲେ ।

ସେହିଦିନ ରାତିରେହିଁ ସୋମେଶ୍ୱର କୌଶିକକୁ ପଚାରିଲେ, "ବାପ, ତୁମେ କିଛି ଖରାପ ଭାବିବ ନାହିଁ, ମଦ ପିଇବା ବା ଜୁଆ ଖେଳିବା ଆଦି କିଛି ବଦଭ୍ୟାସ ତୁମର ଅଛି କି ?" ଚଟାପଟ କୌଶିକ କହିଲା, "ନାଁ, ଆଦୌ ନୁହେଁ, ମୋର ସେପରି କୌଣସି ବଦଭ୍ୟାସ୍ ନାହିଁ ।"

ପରେ ଯେତେବେଳେ ସୋମେଶ୍ୱର ଏକଥା ସଦାନନ୍ଦଙ୍କୁ କହିଲେ, ଟିକିଏ ରହି ସଦାନନ୍ଦ କହିଲେ, "ମୋ ପୁଅର ଗୋଟିଏ ମାତ୍ର ବଦଭ୍ୟାସ ଅଛି; ସେଇଟା ହେଲା ସେ କେବେ ବି ସତକଥା କହେ ନାହିଁ ।"





# ରାଜହଂସ

ପ୍ରାଚୀନ କାଳରେ ଥରେ କାଶୀ ରାଜ୍ୟରେ ରାଜତ୍ୱ କରୁଥା'ନ୍ତି ବ୍ରହ୍ମଦତ୍ତ । ସେତେବେଳେ କେବଳ ଚିତ୍ରକୂଟ ପର୍ବତରେ ବାସ କରୁଥା'ନ୍ତି ନବେ ହଜାର ହଂସ । ସେମାନଙ୍କ ମଧ୍ୟରେ ହଂସଟିଏ ହୋଇ ଜନ୍ମ ନେଇଥା'ନ୍ତି ଭଗବାନ ବୋଧିସତ୍ତ୍ୱ । ସେ ରୂପ ଗୁଣରେ ସମସ୍ତଙ୍କର ପ୍ରିୟ ଓ ସମସ୍ତଙ୍କ ମଧ୍ୟରେ ପ୍ରଧାନ ହୋଇ ଉଠିବାରୁ ତାକୁ ସମସ୍ତେ ରାଜହଂସ ଉପାଧିରେ ଭୂଷିତ କରିଥା'ନ୍ତି ।

ଦିନେ ରାଜହଂସ ନିଜର ଦଳବଳ ନେଇ ଏକ ବିରାଟ ହ୍ରଦରେ ବିହାର କରିବା ପରେ ଚିତ୍ରକୂଟ ଆଡ଼କୁ ଉଡ଼ ଉଡ଼ ଫେରି ଆସୁଥିଲା । ସେମାନେ ଠିକ୍ କାଶୀରାଜ୍ୟ ଉପରେ ଉଡ଼ ଉଡ଼ ଆସୁଥା'ନ୍ତି । ପକ୍ଷୀମାନଙ୍କର ଏହି ବିଶାଳ ଦଳକୁ ଦେଖି ଲାଗୁଥିଲା ଯେପରି ସାରା କାଶୀ ରାଜ୍ୟ ଉପରେ କିଏ ସୁନାର ଚନ୍ଦ୍ରାତପ ଟାଣି ଦେଇଛି । ରାଜା ସ୍ୱୟଂ ଛାତ ଉପରେ ଥାଇ ଏ ଅପୂର୍ବ ଦୃଶ୍ୟ ଦେଖୁଥା'ନ୍ତି । ସମସ୍ତ ହଂସମାନଙ୍କ ମଧ୍ୟରେ ତାରାଗଣଙ୍କ ମଧ୍ୟରେ ଚନ୍ଦ୍ରମା ସଦୃଶ ଶୋଭା ପାଉଥିବା ରାଜହଂସକୁ ଦେଖି ରାଜା ଅତ୍ୟନ୍ତ ମୁଗ୍ଧ ହେଲେ । ରାଜହଂସର ତେଜ, ସୌନ୍ଦର୍ଯ୍ୟ ଓ ଅନ୍ୟାନ୍ୟ ରାଜୋଚିତ ଲକ୍ଷଣ ସବୁ ଦେଖି ସେ ବହୁତ ପ୍ରଭାବିତ ହୋଇ ଫୁଲମାଳ ଓ ପୂଜାଦି ଦ୍ରବ୍ୟ ନେଇ ତାକୁ ଅଭିନନ୍ଦନ ଜଣାଇଲେ । ରାଜହଂସ ମଧ୍ୟ ରାଜାଙ୍କର ଏହି ଅପୂର୍ବ ଆତିଥ୍ୟକୁ ଅତ୍ୟନ୍ତ ସ୍ନେହ ସହକାରେ ସ୍ୱୀକାର କଲା ଓ ନିଜ ପରିବାରବର୍ଗ ସହ ସେଠାରେ କିଛିଦିନ ଅବସ୍ଥାନ କରି ପୁଣି ନିଜ ସ୍ଥାନକୁ ଲେଉଟି ଗଲା ।

ସେହି ଦିନଠାରୁ ରାଜହଂସ ପ୍ରତି ବ୍ରହ୍ମଦତ୍ତଙ୍କର ସ୍ନେହ ବଢ଼ିବାକୁ ଲାଗିଲା । ସେ ସବୁବେଳେ ତା'ରି କଥା ଭାବୁଥା'ନ୍ତି ତାକୁହିଁ ଝୁରି



ହେଉଥା'ନ୍ତି । ସବୁବେଳେ ଆକାଶ ଆଡ଼କୁ ଚାହିଁ ବସିଥା'ନ୍ତି ଏଇ ଆଶାରେ ଯେ ଯଦି ରାଜହଂସ ଏଇବାଟେ କୁଆଡ଼େ ଉଡି ଯାଉଥିବ ତେବେ ତା'ର ଦେଖା ମିଳିବ ।

ଏଣେ ଚନ୍ଦ୍ରକୂଟ ପର୍ବତରେ ଦିନେ ଦୁଇଟି ଛୋଟ ହଂସ ଆସି ରାଜହଂସକୁ କହିଲେ, "ରାଜନ୍, ଆମେ ଦୁହେଁ ସୂର୍ଯ୍ୟଙ୍କ ସହିତ ଗତି ରଖି ଉଡ଼ିବାକୁ ଚାହୁଁ, ଅନୁମତି ଦିଅନ୍ତୁ ।"

ଏକଥା ଶୁଣି ରାଜହଂସ ସେମାନଙ୍କୁ ବୁଝାଇ କହିଲା, "ତମେ ସୂର୍ଯ୍ୟଙ୍କ ଗତି ସହ କିପରି ଉଡ଼ିବ? କେଉଁଠି ଭଗବାନ ସୂର୍ଯ୍ୟ ଆଉ କେଉଁଠି ତମେ ଦୁଇଟା ଶିଶୁ ମାତ୍ର । ସୂର୍ଯ୍ୟଙ୍କର ଗତି ବିଷୟରେ ତୁମର ବୋଧହୁଏ କିଛି ଧାରଣା ନାହିଁ । ପୁଣି ଏପରି କଲେ ତମ ଜୀବନ ଉପରେ ବିପଦ ପଡ଼ିପାରେ । ତେଣୁ ଏସବୁ ଚିନ୍ତା ମନରୁ ତ୍ୟାଗ କର ।"

ରାଜହଂସର ଏ କଥା ସେମାନଙ୍କୁ ଭଲ ଲାଗିଲା ନାହିଁ । ତେଣୁ ସେମାନେ କିଛିଦିନ ପରେ ପୁଣି ଆସି ରାଜହଂସକୁ ଅନୁମତି ମାଗିଲେ । ଏଥର ମଧ୍ୟ ରାଜହଂସ ସେମାନଙ୍କୁ ଅନୁମତି ଦେଲାନାହିଁ । ପୁଣି ତୃତୀୟ ଥର ମଧ୍ୟ ସେମାନେ ଅନୁମତି ଚାହିଁଲେ । ରାଜହଂସ କିନ୍ତୁ ନିଜ କଥାରେ ଅଟଳ ।

କିଛିଦିନ ପରେ ଛୋଟ ହଂସଦ୍ୱୟ ରାଜହଂସର କଥା ନ ମାନି ଉଡ଼ି ଉଡି ଯାଇ ଯୁଗନ୍ଧର ପର୍ବତର ଶିଖର ଦେଶରେ ପହଞ୍ଚିଲେ । ସେ ସ୍ଥାନ ଅତି ଉଚ୍ଚରେ ଅବସ୍ଥିତ; ସେଠାରେ ପହଞ୍ଚି ସେମାନେ ମନସ୍ଥ କଲେ କିପରି ସୂର୍ଯ୍ୟଙ୍କ ସହିତ ଉଡ଼ିବେ । ଏଣେ ରାଜହଂସ ହଂସଦଳକୁ ଗଣିବାରୁ ଜାଣିପାରିଲା ଦୁଇଜଣ ନାହାନ୍ତି । ରାଜହଂସ ଘଟଣାଟା ସହଜରେ ବୁଝିନେଲା ଓ ସେମାନଙ୍କ ପାଇଁ ଚିନ୍ତିତ ହେଲା । ପୁଣି ଭାବିଲା, "ଚିନ୍ତା କଲେ ଏବେ ଆଉ କ'ଣ ହେବ । କୌଣସି ମତେ ସେମାନଙ୍କୁ ରକ୍ଷା କରିବାକୁ ହେବ ।"

ରାଜହଂସ ତତ୍‌କ୍ଷଣାତ୍ ଯାଇ ଯୁଗନ୍ଧର ପର୍ବତ ଉପରେ ପହଞ୍ଚିଲା ଓ ଗୋଟିଏ ଗୁହା ଆଢୁଆଳରେ ଲୁଚିରହି ସେମାନଙ୍କ ଗତିବିଧି ଲକ୍ଷ୍ୟ କଲା ।



ଏପରି ନାନା ସ୍ନେହପୂର୍ଣ୍ଣ କଥା କହି ସେ ତାକୁ ପିଠି ଉପରେ ବସାଇ ନେଇ ଘରେ ଛାଡ଼ିଲା ।

କିଛି ସମୟ ପରେ ଦ୍ୱିତୀୟ ହଂସଟିର ଅବସ୍ଥା ମଧ୍ୟ ତଦ୍ରୂପ ହେଲା । ତାକୁ ମଧ୍ୟ ରାଜହଂସ ସେଇପରି ରକ୍ଷା କଲା ଓ ଚିତ୍ରକୂଟରେ ଆଣି ଛାଡ଼ିଲା ।

ନିଜ ପରିବାରର ଦୁଇଟି ପକ୍ଷୀ ଏପରି ହାରି ଯାଇଥିବାରୁ ରାଜହଂସର ମନରେ ଦୁଃଖ ହେଲା । ସେ ସେହି ଅପମାନ ସହି ନ ପାରି ସ୍ୱୟଂ ଉଡ଼ିବା ପାଇଁ ମନସ୍ଥ କଲା । ଅପୂର୍ବ କ୍ଷିପ୍ରଗତିରେ ରାଜହଂସ ଉଡି ଉଡ଼ି ଯାଇ ଆକାଶରେ ସୂର୍ଯ୍ୟଙ୍କ ପାଖରେ ପହଞ୍ଚିଲା ଏବଂ ପଲକ ମଧ୍ୟରେ ସେ ସୂର୍ଯ୍ୟମଣ୍ଡଳ ଟପି ଉପରକୁ ଉଠିଗଲା । ସେ କେବଳ ଜାଣିବାକୁ ଚାହୁଁଥିଲା ସୂର୍ଯ୍ୟଙ୍କ ଶକ୍ତି କେତେ କିନ୍ତୁ ସୂର୍ଯ୍ୟଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ନୁହେଁ । ତେଣୁ ସେ କିଛି ସମୟ ପାଇଁ ସେଠାରେ ବୁଲାବୁଲି କରି ପୁଣି ପୃଥିବୀ ଉପରକୁ ଫେରି ଆସି କାଶୀ ରାଜ୍ୟରେ ପହଞ୍ଚିଲା ।

ଅନେକ ଦିନ ହେବ ରାଜହଂସର ଦେଖା ପାଇବା ପାଇଁ କାଶୀରାଜ ବହୁତ ବ୍ୟାକୁଳ ହୋଇଥିଲେ । ରାଜହଂସକୁ ଦେଖି ତାଙ୍କର ଆନନ୍ଦର ସୀମା ନାହିଁ । ରାଜା ରାଜହଂସକୁ ନେଇ ନିଜର ସ୍ୱର୍ଣ୍ଣ ସିଂହାସନରେ ବସାଇଲେ ଓ ସ୍ୱର୍ଣ୍ଣ ପାତ୍ରରେ କ୍ଷୀର ଓ ସ୍ୱର୍ଣ୍ଣ କଳସରେ ସୁମିଷ୍ଟ ଜଳ ଦ୍ୱାରା ତା'ର ଅତିଥିସତ୍କାର

ପରଦିନ ସୂର୍ଯ୍ୟ ଉଦୟ ହେବା ମାତ୍ରେ ଶ୍ରେଷ୍ଠ ହଂସ ଦୁଇଜଣ ସୂର୍ଯ୍ୟଙ୍କ ସହିତ ଉଡ଼ିବାକୁ ଲାଗିଲେ । ରାଜହଂସ ମଧ୍ୟ ସେମାନଙ୍କ ପଛେ ପଛେ ଉଡ଼ିଲା । ସେମାନଙ୍କ ମଧ୍ୟରୁ ସାନଟି ଦ୍ୱିପ୍ରହର ପର୍ଯ୍ୟନ୍ତ ଉଡ଼ିଲା; କିନ୍ତୁ ପକ୍ଷ ସବୁ ସୂର୍ଯ୍ୟ କିରଣରେ ପୋଡ଼ି ଯିବାରୁ ସେ ବେହୋସ ହୋଇ ପଡିଗଲା । ପଡ଼ିବା ବେଳେ ରାଜହଂସକୁ ଦେଖିଲା ଓ ନିରାଶ ହୋଇ କହିଲା, "ରାଜନ୍, ମୁଁ ଆପଣଙ୍କ କଥା ନ ଶୁଣି ଗଲି । ଏବେ ହାରିଗଲି ।"

ରାଜହଂସ ତାକୁ ସାନ୍ତ୍ୱନା ଦେଇ କହିଲା, "ଠିକ୍ ଅଛି, ମୁଁ ତୋର ସହାୟତା କରିବା ପାଇଁହିଁ ଏଠାକୁ ଆସିଛି । ଭୟ କରନା ।"

କରିଲେ । ସେ ରାଜାଙ୍କ ଆତିଥ୍ୟ ସ୍ୱୀକାର କରି ନିଜର କ୍ଳାନ୍ତି ହରଣ କଲା । ତା'ପରେ ସମସ୍ତ ଘଟଣା ରାଜାଙ୍କୁ ସେ ବିସ୍ତାରିତ ଭାବରେ ଶୁଣାଇଲା ।

ସାରା ବୃତ୍ତାନ୍ତ ଶୁଣି ରାଜା ରାଜହଂସର ଅଲୌକିକ ଶକ୍ତି ଦେଖି ଆହୁରି ଅଧିକ ଖୁସି ହେଲେ । ପୁଣି ସେ ରାଜହଂସକୁ ଅନୁରୋଧ କରି କହିଲେ, "ହେ ପକ୍ଷୀରାଜ, ଆପଣଙ୍କର ଅଲୌକିକ ଶକ୍ତିରୁ କିଛି ଆମକୁ କୃପାକରି ଦେଖାନ୍ତୁ । ସେପରି କିଛି ଦେଖିବାକୁ ମୋର ପ୍ରବଳ ଇଚ୍ଛା ହେଉଛି ।"

ରାଜହଂସ ରାଜାଙ୍କୁ ନିଜର ଶକ୍ତିର ପରିଚୟ ଦେବାକୁ ସ୍ୱୀକୃତ ହୋଇ କହିଲା, "ମହାରାଜ, ଆପଣଙ୍କ ରାଜ୍ୟରୁ ଚାରିଜଣ ଧନୁର୍ଦ୍ଧାରୀଙ୍କୁ ଏଠାକୁ ଆଣନ୍ତୁ ଯେଉଁମାନଙ୍କର ତୀରର ଗତି ବିଜୁଳିଠାରୁ ମଧ୍ୟ କ୍ଷିପ୍ର ।"

ରାଜା ସେହିପରି ଚାରିଜଣ ଧନୁର୍ଦ୍ଧାରୀଙ୍କୁ ଆଣିଲେ । ରାଜାଙ୍କ ବଗିଚାରେ ଗୋଟିଏ ଚତୁଷ୍କୋଣ ସ୍ତମ୍ଭ ଥାଏ । ରାଜହଂସ ଚାରିଜଣ ଧନୁର୍ଦ୍ଧାରୀଙ୍କୁ ସ୍ତମ୍ଭର ଚାରି କୋଣରେ ଠିଆ କରାଇ ଦେଲା ଓ ନିଜେ ଗଳାରେ ଏକ ଛୋଟ ଘଣ୍ଟି ବାନ୍ଧିବା ପରେ ଯାଇ ସ୍ତମ୍ଭ ଉପରେ ବସିଲା ।

"ମୋଠାରୁ ସଂକେତ ପାଇବା ମାତ୍ରେ ତମେ ଚାରିଜଣ ନିଜ ନିଜ ଧନୁରୁ ଶର ନିଷ୍କାସନ କରିବ । ମୁଁ ଚାରୋଟି ତୀରକୁ ଉଡ଼ି ଉଡ଼ି ଯାଇ ନେଇ ଆସି ତୁମକୁ ଦେବି । ତମେ ମୋତେ ଉଡ଼ିବା ବେଳେ ଦେଖିବାକୁ



ପାଇବ ନାହିଁ । କେବଳ ମୋ କଣ୍ଠରେ ବନ୍ଧାଥିବା ଘଣ୍ଟିର ଧ୍ୱନୀରୁହିଁ ମୋର ଗତି ବିଷୟ୍ ଜାଣି ପାରିବ ।" ରାଜହଂସ ଧନୁର୍ଦ୍ଧାରି-ମାନଙ୍କୁ କହିଲା ।

ନିଜ କଥା ଅନୁସାରେ ରାଜହଂସ ଚକ୍ଷୁର ପଲକରେ ସମସ୍ତ କାର୍ଯ୍ୟ ସମାଧାନ କଲା । ରାଜା ଓ ତାଙ୍କର ପରିବାର ଏସବୁ ଦେଖି ଆଶ୍ଚର୍ଯ୍ୟ ଓ ମୁଗ୍ଧ ହେଲେ ।

ତା'ପରେ ରାଜହଂସ କହିଲା, "ମହାରାଜ, ଆପଣ ମୋର ଯେଉଁ ଗତି ଆଜି ଦେଖିଲେ ତାହା ମୋର ନିମ୍ନତମ ଗତି । ସେଇଥିରୁ ଅନୁମାନ କରିବେ ମୋର ସର୍ବୋତ୍ତମ ଗତି କିପରି ।"

ରାଜା କହିଲେ, "ହେ ପକ୍ଷୀରାଜ, ଆପଣଙ୍କର ଗତି ଓ ତା'ର ବେଗ ବିଷୟରେ ମୋର ଯଥେଷ୍ଟ ଜ୍ଞାନ ହୋଇଛି । କିନ୍ତୁ କହିପାରିବେ କି ଆପଣଙ୍କ ଅପେକ୍ଷା ଅଧିକ ବେଗବାନ୍ ଆଉ କିଏ ଥାଇପାରେ ?"

"କାହିଁକି ନୁହେଁ ? ମୋ ଅପେକ୍ଷା ଅନନ୍ତଗୁଣ ଅଧିକ ବେଗବାନ୍ ଓ ଗତିଶୀଳ ହେଲ ମହାଶକ୍ତିସମ୍ପନ୍ନ କାଳ ନାମକ ସର୍ପ । ସେହି କାଳସର୍ପ ପ୍ରତିକ୍ଷଣରେ ବିଶ୍ୱର ଜୀବ-ମାନଙ୍କୁ ଅବର୍ଣ୍ଣନୀୟ ବେଗରେ ନଷ୍ଟ କରୁଛି ।"

ଏକଥା ଶୁଣି ରାଜା ଭୟରେ କମ୍ପି ଉଠିଲେ । ସେତେବେଳେ ରାଜହଂସ ରୂପୀ ବୋଧିସତ୍ତ୍ୱ କାଶୀରାଜାଙ୍କୁ ତତ୍ତ୍ୱଉପଦେଶ ଦେଇ କହିଲେ, "ମହାରାଜ, ଯିଏ କାଳସର୍ପ ବିଷୟ ସର୍ବଦା ସ୍ମରଣ ରଖେ, ତା'ର ଡରିବାର କ'ଣ ଅଛି ? ଆପଣ ଯେତେଯାଏଁ ନୀତି ଓ ଧର୍ମକୁ ପାଳନ କରି ଶାସନ କରିବେ, ସେପର୍ଯ୍ୟନ୍ତ ଭୟର କିଛି କାରଣ ନାହିଁ । ତେଣୁ ଆପଣ ବିଧିପୂର୍ବକ ନିଜର କର୍ତ୍ତବ୍ୟହିଁ କରି ଚାଲନ୍ତୁ ।"

ତା'ପରେ ବୋଧିସତ୍ତ୍ୱଙ୍କ ଉପଦେଶାନୁସାରେ ଧର୍ମମାର୍ଗ ଦ୍ୱାରା ଶାସନ କରି ରାଜା ବ୍ରହ୍ମଦତ୍ତ ଅପାର ଯଶ ଲଭ କଲେ ।





ଭାରତ-କାହାଣୀ

# ବେଣ୍ଟିଙ୍କ୍-ଡାଲ୍‌ହାଉସୀ

ଊନବିଂଶ ଶତାବ୍ଦୀର ଆରମ୍ଭରେ ଭାରତରେ ଅରାଜକତା ବ୍ୟାପିଥାଏ । ଇଂରେଜ ଶାସନ ଦୃଢ଼ ହୋଇ ନଥାଏ । ଦେଶୀୟ ରାଜାମାନଙ୍କ ଶାସନ ମଧ୍ୟ ଦୁର୍ବଳ ହୋଇଥାଏ । କେତେକ ସୈନ୍ୟ ଚାକିରୀ ଛାଡ଼ି ଡାକୁ ବନିଗଲେ ।

ପିଣ୍ଡାରୀ ନାମକ କୁଖ୍ୟାତ ଏହି ଡାକୁଦଳଙ୍କ ପ୍ରାଦୁର୍ଭାବ ମଧ୍ୟଭାରତରେ ଅନୁଭୂତ ହେଉଥିଲା । ବହୁ ଚେଷ୍ଟା ପରେ ତାଙ୍କ ନେତା ଅମୀର ଖାଁ ଇଂରେଜମାନଙ୍କ ବଶ ହୋଇ ଟଙ୍କର ନବାବ ହେଲେ । ଅନ୍ୟ ନେତା ଚିଟୁକୁ ବଣରେ ବାଘ ଖାଇଲା ।





ସେତେବେଳେ ଦେଶର କେତେକ ସ୍ଥାନରେ ସତୀଦାହ ପ୍ରଥା ଚାଲୁ ଥାଏ । ପ୍ରଥମେ ତାହା ଆରମ୍ଭ ହୋଇଥିଲା କେତୋଟି ସମ୍ଭ୍ରାନ୍ତ ପରିବାରରେ; ଦୁଃଖରେ ଓ ପରଲୋକରେ ସ୍ୱାମୀ ସହ ମିଳିତ ହେବା ବିଶ୍ୱାସରେ ସ୍ତ୍ରୀମାନେ ସ୍ୱାମୀର ଚିତାରେ ଝାସ ଦେଉଥିଲେ । ପରେ ତାହା କ୍ରମେ ଏକ ପ୍ରଥା ହୋଇ ଚାଲିଲା । ବଡ଼ଲାଟ ଲର୍ଡ ବେଣ୍ଟିଙ୍କ୍ ସେ ପ୍ରଥା ବିରୁଦ୍ଧରେ ଆଇନ୍ କଲେ ।



ଦେଶର ଅନେକ ଅଞ୍ଚଳରେ ସେତେବେଳେ ଠଗ ନାମକ ଦସ୍ୟୁଦଳ ଉତ୍ପାତ କରୁଥିଲେ । ଏକାକୀ କୌଣସି ବାଟୋଇକୁ ଦେଖିଲେ ସେମାନେ ତାକୁ ମାରି ପକାଇ ତା' ସହ ଥିବା ଜିନିଷପତ୍ର ଛଡ଼ାଇନେଇ ଯାଉଥିଲେ । ଅନେକ ଚେଷ୍ଟା କରି ଲର୍ଡ ବେଣ୍ଟିକ ସେମାନଙ୍କୁ ଦମନ କରି ପାରିଲେ ।

କେତେକ ଉପଜାତିର ଲୋକେ ସେମାନଙ୍କ କ୍ଷେତରେ ମଣିଷ ବଳି ପକାଉଥିଲେ । ତାହା ଦ୍ୱାରା ଭଲ ଫସଲ ହେବ ବୋଲି ସେମାନଙ୍କର ଧାରଣା ଥିଲା । ଲର୍ଡ ବେଣ୍ଟିକ୍ ସେମାନଙ୍କର ଏଭଳି ଅଭ୍ୟାସ ବିରୁଦ୍ଧରେ ମଧ୍ୟ ଆଇନ୍ ପ୍ରଣୟନ କଲେ । ସେମାନେ ଦୂର ଗାଁ ଗଣ୍ଡାରେ ଥିବାରୁ ଏ ଆଇନ୍ କାର୍ଯ୍ୟକାରୀ କରିବା ସହଜ ନଥିଲା । ତଥାପି ସେ ସଫଳ ହେଲେ ।





ଭାରତର ଅଧିକାଂଶ ରାଜା ସେତେବେଳେ ଦୁର୍ଦ୍ଦଶା ଭୋଗୁଥିଲେ ସତ, କିନ୍ତୁ ଜଣେ ରାଜା କ୍ରମେ ଅଧିକରୁ ଅଧିକ କ୍ଷମତାଶାଳୀ ହେଉଥିଲେ । ସେ ହେଲେ ପଞ୍ଜାବର ମହାରାଜା ରଣଜିତ୍ ସିଂହ (୧୭୮୦-୧୮୩୯) । ସେ ଭିନ୍ନ ଭିନ୍ନ ଗୋଷ୍ଠିର ଶିଖମାନଙ୍କୁ ଏକତ୍ର କଲେ । ଇଂରେଜମାନଙ୍କ ସହ ତାଙ୍କର ଥିଲା ସୁସମ୍ପର୍କ ।

୧୮୪୮ରେ ଭାରତର ବଡ଼ଲାଟ ହେଲେ ଲର୍ଡ ଡାଲ୍‌ହାଉସୀ । ମହାରାଜା ରଣଜିତ୍ ସିଂହଙ୍କର ମୃତ୍ୟୁ ପରେ ପରେ ଶିଖ ଓ ଇଂରେଜ୍‌ମାନଙ୍କ ଭିତରେ ଘନ ଘନ ଯୁଦ୍ଧ ହେଉଥାଏ । ଲର୍ଡ ଡାଲ୍‌ହାଉସି ପଞ୍ଜାବକୁ ଇଂରେଜ୍ ଶାସନ ଭିତରକୁ ଆଣିଲେ । ସେ ପେଶଵାରଠୁଁ ବ୍ରହ୍ମଦେଶପାଏ ସାମ୍ରାଜ୍ୟ ବିସ୍ତାର କଲେ ।





ଡାଲ୍‌ହାଉସୀ ଗୋଟାଏ ନାହିଁ ନଥିବା ଆଇନ୍ କଲେ । ଯଦି କୌଣସି ରାଜା ଅପୁତ୍ରିକ ଭାବରେ ପରଲୋକ ଯିବେ, ତେବେ ତାଙ୍କ ରାଜ୍ୟ ଇଂରେଜ ଶାସନ ଅନ୍ତର୍ଭୁକ୍ତ ହେବ । ପୋଷ୍ୟ ପୁତ୍ର ଗ୍ରହଣ ଚଳିବ ନାହିଁ । ଭାରତର ପରମ୍ପରା ପ୍ରତି ଏହା ଥିଲା ଗୋଟାଏ ବଡ଼ ଅପମାନ । କାରଣ ଭାରତୀୟମାନେ ପୁତ୍ର ଓ ପୋଷ୍ୟପୁତ୍ର ଭିତରେ ଫରକ ଦେଖି ନଥିଲେ ।

ଏହି ଅଯୌକ୍ତିକ ଆଇନ୍ ଫଳରେ ନାଗପୁର, ସମ୍ବଲପୁର, ସତାରା ଇତ୍ୟାଦି ରାଜ୍ୟ ଇଂରେଜ ଶାସନକୁ ଚାଲିଗଲା । ୧୮୫୩ରେ ଝାନ୍ସିର ରାଜା ପ୍ରାଣ ତ୍ୟାଗ କଲେ । କିନ୍ତୁ ମୃତ୍ୟୁ ପୂର୍ବରୁ ସେ ତାଙ୍କ ରାଣୀ ଲକ୍ଷ୍ମୀବାଈଙ୍କ ଉପସ୍ଥିତିରେ ବିଧିବଦ୍ଧ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । କିନ୍ତୁ ଡାଲ୍‌ହାଉସୀ ଘୋଷଣା କଲେକି ଝାନ୍ସି ଇଂରେଜ ଶାସନକୁ ଆସିଗଲା ।





ତେଣେ ମରାଠା ରାଜା ପେଶୱା ଦ୍ୱିତୀୟ
ବାଜିରାଓଙ୍କ ମୃତ୍ୟୁ ହେବାରୁ ତାଙ୍କ
ପୋଷ୍ୟ ପୁତ୍ର ନାନା ସାହେବଙ୍କୁ ମଧ୍ୟ
ଡାଲ୍‌ହାଉସୀ ପେଶୱାଙ୍କ ଉତ୍ତରାଧିକାରୀ
ରୂପେ ସ୍ୱୀକାର କରିବାକୁ ରାଜି ହେଲେ
ନାହିଁ । ଫଳରେ ନାନା ସାହେବ
ଇଷ୍ଟ୍ ଇଣ୍ଡିଆ କୋମ୍ପାନୀର ଘୋର
ଶତ୍ରୁ ହେଲେ ।

ଡାଲ୍‌ହାଉସୀ ଉଗ୍ର ସାମ୍ରାଜ୍ୟବାଦୀ
ଥିଲେ । ତେବେ ସଂସ୍କାର ଓ ଉନ୍ନୟନ
କାର୍ଯ୍ୟ ଦିଗରେ ମଧ୍ୟ ତାଙ୍କର ଆଗ୍ରହ
ଥିଲା । ତାଙ୍କରି ଉତ୍ସାହରେ ୧୮୫୩
ମସିହାରେ ବୋମ୍ବେ ଏବଂ ଥାନେ-
ଭିତରେ ଭାରତର ପ୍ରଥମ ରେଳଗାଡ଼ି
ଚଳାଚଳ ଆରମ୍ଭ ହେଲା । ତାହା
ଥିଲା ଏକ ବିଶେଷ ଘଟଣା ।






ସେ ଭାରତରେ ତାର ବାର୍ତ୍ତା ବ୍ୟବସ୍ଥାର
ବି ପ୍ରଚଳନ କରିଥିଲେ । ତା'ପରେ
ସେ ଦେଶବ୍ୟାପି ଡାକ ଚଳାଚଳ
ବ୍ୟବସ୍ଥା କଲେ । ସେତେବେଳର ମୁଦ୍ରା
ଅନୁସାରେ ଅଧ ଅଣି ମୂଲ୍ୟରେ ଦେଶ
ଭିତରେ ଯେ କୌଣସି ସ୍ଥାନକୁ ଚିଠି
ପଠାଇବା ସମ୍ଭବ ହେଲା ।
ଡାଲ୍‌ହାଉସୀ କଲିକତା, ବୋମ୍ବେ
ଓ ମାଡ୍ରାସ୍‌ରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା
ଦିଗରେ ବି ପ୍ରସ୍ତାବ ଆଣିଥିଲେ ।




# ସାହୁକାରର ଶିକ୍ଷା

ଗୋଟାଏ ଗାଁରେ ରହୁଥିଲା ଜଣେ ସାହୁକାର। ସେ ଅନେକ ଟଙ୍କା କଉଡ଼ି ସଞ୍ଚୟ କରିଥିଲା। ବାପାଙ୍କଠାରୁ ଉତ୍ତରାଧିକାରୀ ସୂତ୍ରେ ଗୋଟାଏ ବିରାଟ ଫଳ ବଗିଚା ମଧ୍ୟ ପାଇଥିଲା। ସେଥିରେ ବହୁତ ଆମ୍ବ ଫଳୁଥିଲା। ସାହୁକାର ଆମ୍ବତକ ବିକି କରି ନିଜ ସଞ୍ଚୟ ବଢ଼ାଇ ଚାଲିଥାଏ। ନିଜେ ଅତି ଗରିବ ଭାବରେ ଚଳୁଥାଏ। ଯିଏ ନିଜ ପାଇଁ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନଥାଏ, ସେ ଅନ୍ୟ ପାଇଁ ଖର୍ଚ୍ଚ କରିବାର ପ୍ରଶ୍ନ ବା କାହିଁ ଉଠୁଛି ?

ପାଚିଲା ଫଳ ସବୁ ଦେଖି ପ୍ରତିବେଶୀମାନେ ଅନେକ ସମୟରେ ଆତୁର ଭାବରେ ଅନାଉଥାନ୍ତି। କିନ୍ତୁ ସାହୁକାର ଜୀବନରେ କାହାକୁ ଗୋଟାଏ ବି ଫଳ ଦେଉ ନଥାଏ।

ଯେତେବେଳେ ଆମ୍ବ ପାଚିବା ସମୟ ହୁଏ, ସେତେବେଳେ ସେ ତିନିଜଣ ମଜୁରିଆ ଲଗାଇ ସେସବୁ ତୋଳି ଗଣାଗଣି କରି ରଖେ। ଜଣେ ବେପାରୀ ଆସି ଦରଦାମ ଛିଡ଼ାଇ ସେସବୁ ତାହାଠୁଁ କିଣି ବଜାରକୁ ପଠାଏ।

ଦିନେ ମଜୁରିଆ ତିନିଜଣ ଆମ୍ବ ତୋଳୁଥାନ୍ତି। ସାହୁକାର ନିଜେ ମଧ୍ୟ ସେମାନଙ୍କ ସହ କାମ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଉପରେ ଆଖି ରଖିଥାଏ।

ସେ ଦେଖିଲା ଜଣେ ମଜୁରିଆ ତଳେ ଖସି ପଡ଼ିଥିବା ଗୋଟାଏ ପାଚିଲା ଆମ୍ବ ଖାଉଛି। ସେ ସଙ୍ଗେ ସଙ୍ଗେ ଦୌଡ଼ିଯାଇ ପାଟିକରି କହିଲା, "ଚୋର ଧରା ପଡ଼ିଛି !"

"ନା ବାବୁ, ମୁଁ ଚୋର ନୁହେଁ। ମୁଁ ତ ଆପଣଙ୍କ ଆଖି ଆଗରେ ଖାଉଛି। ଚୋରି କେମିତି ହେଲା ? ଏଇଟାର ଗୋଟାଏ ପାଖ ପଚି ଯାଇଛି। ତେଣୁ ବେପାରୀ ଏ ଗୋଟିକ ନିଅନ୍ତା ନାହିଁ। ମୁଁ ସକାଳେ କିଛି ଖାଇ




"ବେପାରୀ ସବୁ ଆମ୍ବ ଏକାବେଳେ ନିଏ । ଗୋଟାଏ ଗୋଟାଏ ବିକୁଥିଲେ ଏହି ଦାମରେ ବିକନ୍ତି !" କହିଲା ସାହୁକାର ।

"ରଖନ୍ତୁ ଆପଣଙ୍କ କାମ । ମୁଁ ଆଉ ଆପଣଙ୍କ ପାଖରେ କାମ କରିବି ନାହିଁ ।" ଏପରି ଅନ୍ୟାୟ ମଣିଷ ପକ୍ଷରେ ସହ୍ୟ କରିବା କଷ୍ଟ । ମୁଁ ଯାଉଛି ।" କହି ମଜୁରିଆ କାମଦାମ ଛାଡି ଯିବାକୁ ବାହାରିଲା ।

"ତୋ ଇଚ୍ଛାରେ କ'ଣ ସବୁ ହେବ । ଏତେ ଯଦି ତତେ ବାଧିଗଲା ଟଙ୍କାଟା ଦେଇ ଦେଇ ଯା' । ସେମିତି ଚାଲିଯିବୁ କୁଆଡ଼େ ଟଙ୍କା ନ ଦେଇ ?" ଏକଥା କହି ସାହୁକାର ଦୌଡ଼ି ଯାଇ ତା' ହାତକୁ ଧରି ଝିଙ୍କିଲା ।

ନଥିଲି । ତେଣୁ ଖାଇ ପକାଇଲି ।" ମଜୁରିଆ କହିଲା ।

"ତୁ ଯଦି ଚୋର ନୋହୁଁ, ତେବେ ଏହାର ଦାମ ଦେଇ ଦେ ।" କହିଲା ସାହୁକାର ।

"ବାବୁ, ଏ ପଚ୍ଚ ଆମ୍ବର ଦାମ କେତେ ?"

"ତୋର ଦୁଇଦିନର ମଜୁରି । ତୁ ଗତକାଲି କାମ କରିଥିଲୁ । ଆଜି ସାରାଦିନ ବି କାମ କର । ମଜୁରି ଆଶା କରନା ।" ସାହୁକାର କହିଲା ।

"କ'ଣ କହିଲେ ବାବୁ ? ଗୋଟାଏ ପଚ୍ଚ ଆମ୍ବର ଦାମ ମୋର ଦୁଇଦିନର ମଜୁରି ? ଆପଣ କ'ଣ ବେପାରୀକୁ ଏଇ ଦାମରେ ବିକନ୍ତି ?"

ମଜୁରିଆ ତ ରାଗି ଯାଇଥିଲା । ସେ ସାହୁକାର ହାତକୁ ଛୁଆଁଡି ଦେବାରୁ ସାହୁକାର ତଳେ ପଡ଼ିଗଲା ଓ ରାଗିଯାଇ ସବୁ ମଜୁରିଆଙ୍କ ଉପରେ ଗାଳି ଓ ଅଭିଶାପ ଦେବାକୁ ଲାଗିଲା । ପ୍ରଥମ ମଜୁରିଆ ତା' ଆମ୍ବ ପଇସା ଦେଇଦେଲା ଓ ଚାଲିଗଲା କାମ ଛାଡି । ଅନ୍ୟ କେତେଜଣ ମଜୁରିଆ ତା'ର ଦୁର୍ଦ୍ଦଶା ଦେଖି ଓ ନିଜର ଭବିଷ୍ୟତ କଥା ଭାବି ସାହୁକାରଠାରୁ ବିଦାୟ ନେଇ କାମ ଛାଡି ଚାଲିଗଲେ ।

ତେଣିକି ସାହୁକାର ଆଉ ମଜୁରିଆ ରଖେ ନାହିଁ । ନିଜେ ଆମ୍ବତକ ତୋଳି ବେପାରୀକୁ ବିକି କରେ । ଅନେକ ଆମ୍ବ ନଷ୍ଟ ହୋଇ-ଯାଏ । ସେ ଗଛ ଚଢ଼ି ନ ପାରିବାରୁ ଅନେକ

ଆମ୍ବ ଗଛରେହିଁ ରହି ତଳେ ପଡ଼ି ଫାଟି ଯା'ନ୍ତି । ବେପାରୀ ସେଗୁଡ଼ା ନେବାକୁ ରାଜି ହୁଏ ନାହିଁ । ତଥାପି ସେ ହିସାବ କରି ଦେଖିଲା ମଜୁରିଆମାନଙ୍କୁ ପଇସା ଦେଇ ରଖିବା ଅପେକ୍ଷା ଆମ୍ବ ଏପରି ଭାବରେ ନଷ୍ଟ ହେବା ଭଲ । କ୍ଷତିରେ ବିଶେଷ ତାରତମ୍ୟ ହେଉ ନାହିଁ । ମଜୁରିଆ ରଖିଲେ ସେମାନଙ୍କ ସହ ଝଗଡ଼ା ହେବ ଓ ଫଳରେ ସେ ମାଡ଼ ଖାଇବା ଅସମ୍ଭବ ନୁହେଁ ।

ଦିନେ ସେ ବଗିଚାରେ ବୁଲୁଛି, ଦେଖିଲା ଗୋଟାଏ ଅଦ୍ଭୁତ ପକ୍ଷୀ ଗୋଟାଏ ଡାଳ ଉପରେ ବସି ଆମ୍ବଟାଏ ଖୁମ୍ପି ଚାଲୁଛି । ତା'ର ଭୀଷଣ କ୍ରୋଧ ହେଲା । ଯେଉଁ ଆମ୍ବ ସେ ନିଜେ ଖାଉନାହିଁ, ତାକୁ ପକ୍ଷୀ ଖାଇଯିବ ? ସେ ପଛରୁ ଅତି ସତର୍କ ଭାବରେ ଧୀରେ ଧୀରେ ଯାଇ ଝଟ୍‌କିନା ପକ୍ଷୀକୁ ଧରିନେଲା ।

ପକ୍ଷୀ ଖସି ଯିବାକୁ ଚେଷ୍ଟା କରି ନପାରି କହିଲା, "ବାବୁ, ମୋତେ ଛାଡ଼ିଦିଅ, ଛାଡ଼ିଦିଅ ! ମୁଁ ତମକୁ ଏପରି ତିନୋଟି କଥା କହିବି, ଯାହା ଦ୍ୱାରା ତମର ଲାଭ ହେବ ।"

ପକ୍ଷୀ କଥା କହିବା ଦେଖି ସାହୁକାରର ବିସ୍ମୟର ସୀମା ରହିଲା ନାହିଁ । ଯେଉଁ ପକ୍ଷୀ କଥା କହି ପାରୁଛି, ସେ ନିଶ୍ଚୟ ଲାଭର ସୂତ୍ର ଜାଣିଥିବ ବୋଲି ତା'ର ବିଶ୍ୱାସ ହେଲା । ଲାଭ ବୋଇଲେ ସେ ଅବଶ୍ୟ କେବଳ ଆର୍ଥିକ ଲାଭକୁହିଁ ବୁଝାଉଥିଲା ।




ସେ ପକ୍ଷୀକୁ ଛାଡ଼ି ଦେଲା । ପକ୍ଷୀ ଯାଇ ଗୋଟାଏ ଗଛଡାଳରେ ବସିପଡ଼ି କହିଲା, "ଶୁଣ । ଅନ୍ତତଃ ଯେଉଁ ସବୁ ଆମ୍ବ ବିକି ପାରୁନାହଁ, ତାକୁ ପ୍ରତିବେଶୀମାନଙ୍କୁ ଦେଇଦିଅ । ସେମାନେ ସନ୍ତୁଷ୍ଟ ହେବେ । ତମର ଲାଭ ହେବ ।"

"ଚୁପ୍ !" କ୍ରୋଧ-ଜର୍ଜର ସାହୁକାର ପାଟିକଲା । "ଏଇ ଉପଦେଶ ଦେବାପାଇଁ ତୁ ଖଟିଗଲୁ ?" ସେ ବିରକ୍ତ ହୋଇ କହିଲା ।

"ଶୁଣ ଦ୍ୱିତୀୟ କଥା । ପାଚିଲା ଆମ୍ବରୁ ସବୁ ବିକି ନକରି ନିଜେ ଅନ୍ତତଃ କିଛି ଖାଅ !" ପକ୍ଷୀ କହିଲା ।

"ଠକ ! ଦୁଷ୍ଟ !! ତୁ ମୋତେ ସେସବୁ ଶିଖାଇବାକୁ କିଏ ?" ସାହୁକାର ପାଟି କଲା ।

"ଶୁଣ ତୃତୀୟ କଥା । ତୁମେ ନିଜେ ଯେ ବୋକା, ଏତକ ବୁଝିବାର ଚେଷ୍ଟା କର ।" ପକ୍ଷୀ ପୁଣି କହିଲା ।

ସାହୁକାର ରାଗିଯାଇ ପୁଣି ପକ୍ଷୀକୁ ଧରିବାକୁ ଚେଷ୍ଟା କରିବାରୁ ପକ୍ଷୀ ଗୋଟାଏ ଉପର ଡାଳକୁ ଉଡ଼ି ଚାଲିଗଲା ।

"ମୁଁ ବୋକା ବୋଲି କହିବୁ, ତୋର ଏତେ ସାହସ ?" ସାହୁକାର ପାଟି କଲା ।

"ବୋକା ନୁହେଁ ? ମୋ ଭିତରେ ମହଣେ ସୁନା ରହିଛି । ତମେ ମୋତେ ଧରି ପକାଇ ବି ଛାଡ଼ିଦେଲ । ତଥାପି କହୁଛ ତୁମେ ବୋକା ନୁହଁ ?"

ପକ୍ଷୀ ଭିତରେ ମହଣେ ସୁନା ଥିବା କଥା ଶୁଣି ସାହୁକାରର ଆଖି ଖୋସି ହୋଇଗଲା । ସେ କିଛି ନ କହି ଠିଆ ହୋଇ ରହିଲା । ଖାଲି ତା' ପାଟିରୁ ବାହାରିଗଲା, "ହାୟ !"

ପକ୍ଷୀ ଉଚ୍ଚ କଣ୍ଠରେ ହସି ଉଠିଲା ଓ କହିଲା, "ହଇ ହୋ ବାବୁ, ତମେ ତ ମୋତେ ହାତରେ ଧରିଥିଲ । ମୋ ଓଜନ କ'ଣ ମହଣେ ବୋଲି ମନେ ହେଉଥିଲା ଯେ ମୋ କଥା ଶୁଣି ହାୟ ହାୟ କରୁଛ ? ଏବେ ବି ଭାବୁଛ ତମେ ବୋକା ନୁହଁ ?"

ସାହୁକାର ରାଗରେ ତଳୁ ଢେଲାଟାଏ ଉଠାଇ ନେଇ ପକ୍ଷୀଆଡ଼େ ଫୋପାଡ଼ିଲା । ପକ୍ଷୀ ଉଡ଼ି ଚାଲିଗଲା । କହିଗଲା, "ତମକୁ ଲକ୍ଷ୍ମୀ ମିଳିଥିଲା । କିନ୍ତୁ ତମେ ତାର ଯୋଗ୍ୟ ନୁହଁ ।"

ପକ୍ଷୀର ଗତିପଥକୁ ଚାହିଁ ସାହୁକାର ଦେଖିଲା ଆକାଶରେ ମେଘ ଘୋଟି ଆସୁଛି । ଚାହୁଁ ଚାହୁଁ ଝଡ଼ ଆସିଗଲା । ସେ ନିଜ ଘର ଭିତରକୁ ଦୌଡ଼ି ପଳାଇଗଲା । ଦୀର୍ଘ ସମୟ ଧରି ଝଡ଼ ହେଲା । ବଗିଚାରେ ପ୍ରଳୟ ହୋଇଗଲା । ସବୁ ଗଛ ଓଲଟି ପଡ଼ିଲେ । ସବୁ ଫଳ ଗଲା ନଷ୍ଟ ହୋଇ ।

ସାହୁକାର କହିଲା, "ବାସ୍ତବିକ ଏ ଉଦ୍ୟାନ ଥିଲା ଲକ୍ଷ୍ମୀ ଭଳି । କିନ୍ତୁ ମୋର ଅତି ଲୋଭ ଯୋଗୁଁ ଲକ୍ଷ୍ମୀ ଛାଡ଼ି ଚାଲିଗଲେ !"





# ପରିବର୍ତ୍ତନ

ଜମିଦାରି ଚିନା ଯାଇଛି, କିନ୍ତୁ କୁମାରବାବୁଙ୍କ ଘରର ଖାନ୍‌ଦାନ୍ ଅତୁଟ ଥାଏ । ସେ ଯୁବକ ଲୋକ । ସଦ୍ୟ ବାହା ହୋଇଥାନ୍ତି । ସ୍ତ୍ରୀ ବି ସମ୍ଭ୍ରାନ୍ତ ଘରର ଝିଅ । ତେଣୁ ତାଙ୍କ ଘରକୁ ଆସିବା ପରେ ସ୍ତ୍ରୀ ବସୁମତିର ପ୍ରଥମ-ଥର ଜନ୍ମଦିନ ଉପଲକ୍ଷ୍ୟେ ସେ ସହରରୁ ଗୋଟିଏ ଦୁର୍ମୂଲ୍ୟ ଉପହାର ଆଣିବାକୁ ସ୍ଥିର କଲେ ।

ସହରର ବଶିଷ୍ଟ ଗହଣା ଦୋକାନରୁ ଅଢ଼େଇହଜାର ଟଙ୍କା ମୂଲ୍ୟର ହାରଟିଏ ଖରିଦ୍ କରି ସେ ଗାଁ ମୁହାଁ ଫେରିବା ବେଳକୁ ସଞ୍ଜ ହୋଇ ଆସିଲାଣି । ଅବଶ୍ୟ ସେ ନିଜ ଘୋଡ଼ାଗାଡ଼ିରେ ଯାଇଥାନ୍ତି । ତଥାପି ବେଶି ରାତି ହୋଇଯିବା ଆଶଙ୍କାରେ ନିଜ କୋଚୁଆନ୍ ଜୟସିଂହକୁ କହିଲେ, "ଯେତେ ଶୀଘ୍ର ସମ୍ଭବ ଚାଲ !"

ବାଟରେ ଜୟସିଂହ ହଠାତ୍ ଘୋଡ଼ାର ଲଗାମ ଟାଣି ଗାଡ଼ି ଅଟକାଇଲା । ଦେଖିବା ବେଳକୁ ବାଟ କଡ଼ରେ ଜଣେ ଲୋକ ଠିଆ ହୋଇଛି । ତା' ସହ ସେ କ'ଣ କଥାବାର୍ତ୍ତା ହେଲା ।

"କେଉଁ କାହିଁକି ?" କୁମାରବାବୁ ପଚାରିଲେ ।

"ହଜୁର୍, ଇଏ ହେଲା କାଶୀରାମ, ମୋ ସ୍ତ୍ରୀର କକା ପୁଅ ଭାଇ । ଆମ ଗାଁରେ ଏହାର ଅଜାର ଘର । ଅଜା ଭୀଷଣ ଅସୁସ୍ଥ । ଆପଣଙ୍କ ଅନୁମତି ହେଲେ ଏହାକୁ ଗାଡ଼ିରେ ନେଇଯିବି ।" ଜୟସିଂହ କହିଲା ।

କୁମାରବାବୁ ତାଙ୍କ ଗାଡ଼ିରେ ଅଜଣା ଅଚିହ୍ନା ଲୋକଙ୍କୁ ନେବାକୁ ପସନ୍ଦ କରୁ ନଥାନ୍ତି । କିନ୍ତୁ ସେ ମନା ବା କରିବେ କିପରି ? କହିଲେ, "ହଉ, ଚାଲ !"

ଶ୍ରୀମତୀ ପାରୁଲୀ ଗୋପାଳ



କାଶୀରାମ କୁମାରବାବୁଙ୍କ ପାଖରେ ବସିଲା । ଅବଶ୍ୟ ସେ ବହୁତ ସଙ୍କୋଚରେ ବସିଥାଏ ।

"ଶୀଘ୍ର ଚାଲ, ଶୀଘ୍ର !" କୁମାରବାବୁ ପୁଣି ହୁକୁମ ଶୁଣାଇ ଦେଲେ ।

ରାସ୍ତା ବହୁତ ଖରାପ ଥାଏ । ଗାଡିର ଗୋଟାଏ ଚକା ହଠାତ୍ ଏକ ଗାତରେ ପଶିଗଲା । ଜୟସିଂହ ଠିକ୍ ସମୟରେ ତଳକୁ କୁଦି ପଡ଼ିଲା, କିନ୍ତୁ କୁମାରବାବୁ ତଳେ ପଡ଼ିଗଲେ । ଗାଡ଼ିରେ ଥିବା ଜିନିଷପତ୍ର ଏଣେ ତେଣେ ବିଛେଇ ହୋଇ ପଡ଼ିଲା । ଜୟସିଂହ ଓ କାଶୀରାମ କୁମାରବାବୁଙ୍କୁ ଧରି ଉଠାଇଲେ ଓ ତା'ପରେ ଗାଡ଼ି ସଳଖ କରି ମଟି ରାସ୍ତାକୁ ଆଣିସାରି ଜିନିଷପତ୍ର ଗୋଟାଇ ଗାଡ଼ିରେ ରଖିଲେ ।

ଗାଡି ପୁଣି ଚାଲିଲା । ଟିକିଏ ଉତ୍ତରରେ ସେମାନେ କୁମାରବାବୁଙ୍କ ଘରେ ପହଞ୍ଚିଲେ । କୁମାରବାବୁ ଛୋଟେଇ ଛୋଟେଇ ଘର ଭିତରେ ପଶିବାବେଳକୁ ବସୁମତି ବାହାରି ଆସି ପଚାରିଲା, "ଦେଖିବା, କ'ଣ ଉପହାର ଆଣିଲ !"

କୁମାରବାବୁ ପ୍ରଥମେ ନିଜ ଦୁରବସ୍ଥା ସକାଶେ ଟିକିଏ ସାନ୍ତ୍ୱନା ଚାହୁଁଥିଲେ । ସେ କହିଲେ, "ବାଟରେ ଗାଡି ଓଲଟିଗଲା । କୌଣସି ବଡ଼ ଦୁର୍ଘଟଣା ଯେ ଘଟିନାହିଁ ତାହା ସୌଭାଗ୍ୟର କଥା ବୋଲିବାକୁ ହେବ । ତେବେ..."

"ସେସବୁ ପରେ ଆରାମରେ ବସି ଶୁଣିବା ମ ! ଦେଖେଁ କ'ଣ ଆଣିଛ !" ବସୁମତି ହାତ ବଢ଼ାଇ ଦେଲା ।

କୁମାରବାବୁ ଗହଣା ଥିବା ସୁନ୍ଦର ଛୋଟିଆ ବାକ୍ସଟି ବଢ଼ାଇ ଦେଲେ । ବସୁମତି ଆଗ୍ରହରେ ତାକୁ ଖୋଲିଲା । କିନ୍ତୁ ସଙ୍ଗେ ସଙ୍ଗେ ତା' ମୁହଁ ଗମ୍ଭୀର ହୋଇଗଲା ।

"ଥଟ୍ଟା କରୁଛ ?" ସେ ପଚାରିଲା ।

"କାହିଁକି ? ହାର କ'ଣ ଭଲ ହୋଇ ନାହିଁ ?"

"ହାର ? କାହିଁ ହାର ?"

କୁମାରବାବୁ ବୁଲପଡ ଦେଖିଲେ, ବାକ୍ସ ଖାଲି ।



"ଏହାହିଁ ମୋ ଜନ୍ମଦିନ ପାଇଁ ଉପହାର? ମୋର ଜଣେ ସଙ୍ଗିନୀ ସହରରୁ ଆସିଛି। ସେ ପଡ଼ୋଶୀ ଘରେ ଅଛି। ଆଉ ଟିକିଏ ପରେ ତୁମେ କ'ଣ ଆଣିଛ ଦେଖିବାକୁ ସେ ଆସି ପହଞ୍ଚିବ। ତାକୁ ଏଇଆ ଦେଖାଇବି?"

କୁମାରବାବୁ "ଚୋପ୍!" ବୋଲି କହୁଁ କହୁଁ ରହିଗଲେ। ତାଙ୍କ କ୍ରୋଧ ଯାଇ ପଡ଼ିଲା ଜୟସିଂହ ଉପରେ। ସେ ସଙ୍ଗେ ସଙ୍ଗେ ଘୋଡ଼ାଶାଳକୁ ଯାଇ ଦେଖିଲେ ଜୟସିଂହ ଘୋଡ଼ାକୁ ଦାନା ଖୁଆଉଛି।

"ଜୟସିଂହ! ତମେ ଯାହାକୁ ତମ ସ୍ତ୍ରୀର କକା ପୁଅ ଭାଇ ବୋଲି କହି ଗାଡିରେ ଆଣିଲ, ସିଏ ଡାକୁ, ବଦ୍‌ମାସ୍! ଗାଡ଼ି ଓଲଟି ପଡ଼ିବା ପରେ ଜିନିଷପତ୍ର ଗୋଟାଇବା ଅବକାଶରେ ସିଏ ସୁନାହାରଟି ବାକ୍ସରୁ କାଢ଼ି ନେଇଛି। ତାର ଦାମ ଅଢ଼େଇ ହଜାର ଟଙ୍କା!"

"ବାବୁ! କହୁଛନ୍ତି କ'ଣ? କାଶୀରାମ ଏଇଆ କଲା? ମୁଁ ଯାଉଛି ତାକୁ ଦେଖିବି। ସେ ଯିବ କୁଆଡ଼େ!" ଏହା କହି ଜୟସିଂହ ସିଧା ନିଜ ଘରକୁ ଯାଇ ତା' ସ୍ତ୍ରୀକୁ କହିଲା, "ତମ କକା ପୁଅ ଭାଇ କାଶୀରାମ ଯୋଗୁଁ ବର୍ତ୍ତମାନ ମୋର ମାନ ଇଜ୍ଜତ ଗଲା। ସେ ତା' ଅଜାକୁ ଦେଖିବାକୁ ଆସିଲା; ବାଟରେ ମାଲିକଙ୍କ ବାକ୍ସରୁ ଅଢ଼େଇ ହଜାର ଟଙ୍କା ମୂଲ୍ୟର ହାର କାଢ଼ି ନେଇଛି। ଅଜାବୁଢ଼ା ଭୀଷଣ ଅସୁସ୍ଥ ବୋଲି ଶୁଣି ସିନା ମୁଁ ତାକୁ ଗାଡ଼ିରେ ଆଣିଲି!"

"ବୁଢ଼ା ଅସୁସ୍ଥ? ମୁଁ ତ ଜାଣି ନଥିଲି। ଯାଇ ଦେଖେଁ।"

ହାର ଚୋରି ହୋଇଯାଇଥିବା ଉପରେ ଜୟସିଂହର ସ୍ତ୍ରୀ ବିଶେଷ ଗୁରୁତ୍ୱ ନଦେଇ ତା' ସମ୍ପର୍କୀୟ ଅଜା ବୁଢ଼ାର ଅସୁଖ କଥା ଶୁଣି ବିଚଳିତ ହୋଇ ସେ ବୁଢ଼ାକୁ ଦେଖିବା ସକାଶେ ବାହାରି ଗଲା।

ତେଣେ କୁମାରବାବୁ ଘୋଡ଼ାଶାଳରୁ ଘରକୁ ଫେରିବା ବାଟରେ ଦେଖିଲେ ଜଣେ ଅପରିଚିତା ମହିଳା ତାଙ୍କ ଘର ପଛ ବାଟ



ଦେଇ ଚାଲିଗଲେ। ସେ ଟେଙ୍ଗେଇ ଟେଙ୍ଗେଇ ଘର ଭିତରେ ପଶିବା ମାତ୍ରେ ବସୁମତି ଆଖି ଛଳ ଛଳ କରି କହିଲା, "ମୋର ଭୁଲ୍ ହୋଇଛି। ତୁମେ ବାଟରେ ପଡ଼ିଯାଇ ଗୋଡ଼ରେ ଆଘାତ ପାଇଛ, ସେ ପ୍ରତି ଦୃଷ୍ଟି ନଦେଇ ମୁଁ ପ୍ରଥମେ ଉପହାର କଥା ଭାବିଲି! ତୁମେ ଘରୁ ବାହାରିଗଲା ବେଳେ ମୋ ବାନ୍ଧବୀ ପଛପଟେ ଦେଇ ଘରକୁ ଆସିଥିଲା। ସେ ତମେ ଟେଙ୍ଗେଇ ଚାଲିବା କଥା ଲକ୍ଷ୍ୟ କରି ମୋତେ କହିଲା, ଅଥଚ ମୁଁ ତାହା ଜାଣି ନଥିଲି!"

ବସୁମତିର ଅନୁଶୋଚନା ଦେଖି

କୁମାରବାବୁ ଖୁସି ହେଲେ।

ସକାଳେ ସେ ପିଣ୍ଡାରେ ବସି ଜୟସିଂହକୁ ଅପେକ୍ଷା କରୁଛନ୍ତି, ଦେଖିଲେ ଗତକାଲି ସହରରେ ଯେଉଁ ଗହଣା ଦୋକାନରୁ ସେ ହାରଟି କିଣିଥିଲେ, ସେ ଦୋକାନର ମାଲିକ ଆସୁଛନ୍ତି।

"ନମସ୍କାର, ଆପଣ କେମିତି ଏଆଡ଼େ?" କୁମାରବାବୁ ଉଠି ପଡ଼ି ପଚାରିଲେ।

"ଆରେ କୁମାରବାବୁ, ଆପଣ ଯେମିତି ଭଲ ମଣିଷ, ମୋ କର୍ମଚାରୀଟି ସେମିତି ଭୋଳା ମଣିଷ। ଆପଣ ହାର ପସନ୍ଦ କରି ଟଙ୍କା ଦେଇ ଖାଲି ବାକ୍ସଟି ଉଠାଇ ଆଣି ଚାଲି ଆସିଲେ, ହାରଟି ବାହାରେ ରହିଗଲା! ରାତିରେ ଦୋକାନ ବନ୍ଦ କରିବା ପୂର୍ବରୁ ସବୁ ରଖାରଖି କରିବା ବେଳେ ଏହା ଜଣା ପଡ଼ିଲା! ଆପଣ କେମିତି କିଛି ନ ଜାଣିଲା ପରି ବସିଥିଲେ? କ'ଣ ବାକ୍ସଟି ଖୋଲି ଦେଖି ନାହାନ୍ତି?"

କୁମାରବାବୁ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ କାଶୀରାମକୁ ଭୁଲ୍ ସନ୍ଦେହ କରିଥିବାରୁ ଦୁଃଖିତ ହେଲେ। ଦୋକାନୀ ବିଦାୟ ନେଇଯିବା ପରେ ସେ ଜୟସିଂହକୁ ଡାକିବାକୁ ଯାଉଛନ୍ତି, ଜୟସିଂହ ଆସି ପହଞ୍ଚିଗଲା।

"ଜୟସିଂହ, ବଡ଼ ଭୁଲ ହୋଇଗଲା। ହାର ବାସ୍ତବିକ ମୁଁ ସହରରେ ସେ ଗହଣା ଦୋକାନରେହିଁ ଛାଡ଼ି ଆସିଥିଲି। କାଶୀରାମର

କିଛି ଦୋଷ ନାହିଁ। ତମେ ତାକୁ କ'ଣ କହିଲ ? ସେ ବା କ'ଣ କହିଲା ?" କୁମାରବାବୁ ଉତ୍କଣ୍ଠିତ ଭାବରେ ପଚାରିଲେ।

"ବାବୁ, ତାକୁ କିଛି କୁହା ହୋଇନାହିଁ। କିନ୍ତୁ ଆପଣ ମୋତେ ସେକଥା କହି ମୋର ବହୁତ ଲାଭ କରାଇ ଦେଲେ !" ହସି ହସି ଜୟସିଂହ କହିଲା।

"ମାନେ ?"

"ମୁଁ ଯାଇ ମୋ ସ୍ତ୍ରୀକୁ ସେକଥା କହିବା ମାନେ ସେ ବୁଢ଼ା ଅଜା ଘରକୁ ବାହାରିଗଲା। ସେଠାରେ ଯାଇ ଦେଖିବା ବେଳକୁ ବୁଢ଼ା ସହ କାଶୀରାମ ଝଗଡ଼ା କରୁଛି। ବୁଢ଼ାର ନିଜର ବୋଲି କେହି ନାହିଁ। କାଶୀରାମର ଜିଗର ବୁଢ଼ା ତା'ର ଧନସମ୍ପତ୍ତି ତା' ନାମରେ ଲେଖି ଦେଉ। ସେ କାଗଜ ପ୍ରସ୍ତୁତ କରି ଆଣିଥାଏ। ବୁଢ଼ା କିନ୍ତୁ ସେଥିରେ ରାଜି ନ ହେବାରୁ ସେ ବୁଢ଼ାକୁ ଗାଳିଗୁଲଜ ଦେଇ ପଳାଇଗଲା। ବୁଢ଼ାର କ'ଣ ମନ ହେଲା କେଜାଣି, ସେ ସଙ୍ଗେ ସଙ୍ଗେ ମୋ ସ୍ତ୍ରୀକୁ ତା'ର ସବୁ ସମ୍ପତ୍ତି ଦେବାକୁ ଠିକ୍ କଲା। ମୋ ସ୍ତ୍ରୀ ଅବଶ୍ୟ ବୁଢ଼ାକୁ ବହୁତ ଭକ୍ତି କରୁଥାଏ ଓ ବୁଢ଼ା ବି ତାକୁ ସ୍ନେହ କରୁଥାଏ। କିନ୍ତୁ ବୁଢ଼ାର ସବୁ ସମ୍ପତ୍ତି ଆମକୁ ମିଳିବ, ଏହା ଆମେ କଳ୍ପନା କରି ନଥିଲୁଁ। ବୁଢ଼ା ଆଜି କାଗଜପତ୍ର କରୁଛି। ଆମକୁ ଯାଇ ତାହାରି ଘରେ ରହିବାକୁ ହେବ।" ଜୟସିଂହ କହିଲା।

"ବୁଢ଼ା ବହୁତ ରଖିଛି କିରେ ?" କୁମାରବାବୁ ପଚାରିଲେ।

ଅଳ୍ପ ଲାଜ କରି ଜୟସିଂହ କହିଲା, "ହଜୁର୍, ତିରିଶି ହଜାର ଟଙ୍କା ପୋତି ରଖିଥିଲା। ଘରଦ୍ୱାର ତ ଅଛି। ଭାବୁଛି କିଛି ବେପାର କରିବି। ଆପଣ ବୁଦ୍ଧି ଦେଲେ ହେଲା।"

"ଜରୁର୍, ଜରୁର୍ !" କୁମାରବାବୁ କହିଲେ। "ହାର ଚୋରି ଭ୍ରମ ଯୋଗୁଁ ମୋ ସ୍ତ୍ରୀ ବସୁମତୀର ମନ ବି ବଦଳି ଗଲା।"



# ବେଳ ଥାଉଁ ଥାଉଁ-

ପ୍ରାଚୀନ କାଳରେ ନାଗପଟ୍ଟନମ ନଗରୀରେ ଥିଲେ ଜଣେ ସୌଦାଗର। ଦେଶ ବିଦେଶରେ ବାଣିଜ୍ୟ କରି ସେ ପ୍ରଭୂତ ଅର୍ଥ ଉପାର୍ଜନ କରିଥିଲେ। ତେବେ ସେ କୌଣସି ଦାନଧ୍ୟାନରେ କିଛି ଖର୍ଚ୍ଚ କରିବାର କେହି କେବେ ଜାଣି ନଥିଲେ। ଥରେ ଥରେ କଥା ପଡ଼ିଲେ ସେ କହୁଥିଲେ, "ଦାନଧର୍ମ କରିବାର ସମୟ କ'ଣ ଚାଲି ଯାଉଛି ?"

ଦିନେ ନଗରୀର ପ୍ରାଚୀନ ଶିବମନ୍ଦିରର ପୂଜକ ଆସି ତାଙ୍କୁ ଭେଟି କହିଲେ, "ମହାଶୟ, ମନ୍ଦିର ମରାମତି କାମ ଜରୁରୀ ହୋଇ ପଡ଼ିଲାଣି। ସେଥିପାଇଁ ଏକ ସହସ୍ର, ସ୍ୱର୍ଣ୍ଣମୁଦ୍ରା ଖର୍ଚ୍ଚ ହେବ। ତାହା ଅବଶ୍ୟ ବହୁତ ବଡ଼ ପରିମାଣ। ତେବେ ଆପଣ ପ୍ରବେଶ ତୋରଣଟି ସୁଦ୍ଧା ନୂଆ କରି ଦେବାର ଖର୍ଚ୍ଚ ତୁଲାଇଲେ ଭଲ ହୁଅନ୍ତା।"

"କେତେ ଖର୍ଚ୍ଚ ହେବ ?" ସୌଦାଗର ପଚାରିଲେ। "ଶହେ ସ୍ୱର୍ଣ୍ଣ ମୁଦ୍ରା !" ଉତ୍ତର ଦେଲେ ପୂଜକ। ସୌଦାଗର ସଙ୍ଗେ ସଙ୍ଗେ ତାଙ୍କୁ ସେତକ ମୁଦ୍ରା ଧରାଇଦେଲେ।

ସେତିକିବେଳେ ଜଣେ କର୍ମଚାରୀ ଆସି ଖବର ଦେଲା କି ତାଙ୍କର ଗୋଟିଏ ପଣ୍ୟବାହୀ ଜାହାଜ ଡୁବି ଯାଇଛି। ତତ୍‌କ୍ଷଣାତ୍ ସୌଦାଗର ପୂଜକଙ୍କ ହାତରୁ ମୁଦ୍ରାତକ ଝିଙ୍କି ନେଲେ। ପୂଜକ ବୁଝିଲେ ଏ ବିପଦ ବେଳେ ଦାନ କରିବା ତାଙ୍କ ପକ୍ଷରେ ଅସମ୍ଭବ। କିନ୍ତୁ ସୌଦାଗର ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ଥିବା ଥଳିଟିଏ ତାଙ୍କୁ ଦେଇ କହିଲେ, "ବିଧାତା ସୂଚାଇ ଦେଲେ କି ଶକ୍ତ ଥାଉଁ ଥାଉଁ ଦାନ ନକଲେ ସେ ସୁଯୋଗ ଭବିଷ୍ୟତରେ ମୋତେ ନ ଆସିପାରେ !"






# ହଠାତ ବିନୟ!

ଶିବନାଥ ଥିଲେ ଜଣେ ବିଶିଷ୍ଟ ବ୍ୟବସାୟୀ । ତାଙ୍କ ରାଜ୍ୟ ପାଇଁ ସେ ଅନେକ ଗୁଡ଼ିଏ ଜିନିଷର ମୁଖ୍ୟ ବିତରକ ଥିଲେ । ଦୋକାନୀ-ମାନେ ତାଙ୍କଠାରୁ ସେସବୁ ଜିନିଷ ନେଇଯାଇ ଜଣିକିଆ ଗରାଖମାନଙ୍କୁ ବିକ୍ରୟ କରୁଥିଲେ । ଅମିଳନ ଜିନିଷମାନ ସବୁ ଦୋକାନୀ ସମାନ ଦରରେ ପାଇବାର ବ୍ୟବସ୍ଥା ସେ କରୁଥିଲେ ।

ଶିବନାଥଙ୍କର ବାଲ୍ୟବନ୍ଧୁ ପ୍ରସାଦ ମଝେ ମଝେ ଶିବନାଥଙ୍କ ଘରକୁ ଆସନ୍ତି । ଦୁଇ ବନ୍ଧୁ ନାନା ଗଳ୍ପ କରି ସମୟ କଟାନ୍ତି ।

ଶିବନାଥଙ୍କର ଜଣେ ଗୁମାସ୍ତା ଥିଲା । ପ୍ରସାଦ ଲକ୍ଷ୍ୟ କରି ଦେଖିଲେ, ଲୋକଟିର ବ୍ୟବହାରରେ କୌଣସି ମାଧୁର୍ଯ୍ୟ ନାହିଁ । ଶିବନାଥ କିଛି ପଚାରିଲେ ସେ 'ହଁ' ବା 'ନାଁ' କହି କାମ ଶେଷ କରେ । ବିନୟ ଭାବ ତ ଦୂରର କଥା, କେବେ ଥରେ ହସେ ମଧ୍ୟ ନାହିଁ ।

ଥରେ ଶିବନାଥ ଓ ପ୍ରସାଦ ତୀର୍ଥ ଭ୍ରମଣରେ ବାହାରିଗଲେ; ପ୍ରାୟ ଛଅମାସ କାଳ ଅନେକ ସ୍ଥାନ ବୁଲିବୁଲି କରି ଫେରି ଆସିଲେ ।

ପରଦିନ ପ୍ରସାଦ ଶିବନାଥଙ୍କ ଘରକୁ ଆସିବା ମାତ୍ରେ ଗୁମାସ୍ତା ହସି ଦେଇ ତାଙ୍କୁ କହିଲେ, "ଆସନ୍ତୁ, ଆସନ୍ତୁ, ଭ୍ରମଣ ଭଲ ହେଲା ତ? ଆପଣମାନଙ୍କ ଦେହ ପା ଭଲ ଥିଲା ତ?"

ପ୍ରସାଦ ଗୁମାସ୍ତାର ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ ବନ୍ଧୁଙ୍କୁ କହିଲେ, "ଶିବ! ତମେ ଲକ୍ଷ୍ୟ କରିଛ, ତମ ଗୁମାସ୍ତା ବଡ଼ ଭଦ୍ର ହୋଇଯାଇଛି । ବେଶ୍ କଥା ।"

ଠିକ୍ ସେତିକିବେଳେ ଗୁମାସ୍ତା ଆସି ମଧୁର ଭାବରେ ହସି, ଅଳ୍ପ କଥା ଭିତରେ ଶିବନାଥଙ୍କୁ ପାଞ୍ଚଥର 'ହଜୁର୍' ବୋଲି କହି ଚାଲିଗଲେ ।

ସମରେନ୍ଦ୍ର

ଏହା ପରେ ପରେ ଦୁଇ ବନ୍ଧୁ ଅନ୍ୟ କଥାରେ ଭୋଳ ରହିଲେ । ଗୁମାସ୍ତା କଥା ଆଉ ଉଠିଲା ନାହିଁ ।

ଏହାପରେ ପ୍ରସାଦ ପନ୍ଦରଦିନ ଉତ୍ତାରେ ଆସି ଦେଖନ୍ତି ତ ଜଣେ ନୂଆ ଗୁମାସ୍ତା ବସିଛି । ଶିବନାଥ ବାହାରୁ ଆସିବା ମାତ୍ରେ ସେ ପଚାରିଲେ, "କହୋ ଶିବ, ତମ ପୁରୁଣା ଗୁମାସ୍ତା କୁଆଡ଼େ ଗଲା କି ?"

"ତାକୁ ବିଦା କରିଦେଲି !"

"ଆଁ ! ଏତେଦିନଯାଏ ତା' ରୁକ୍ଷ ବ୍ୟବହାର ବରଦାସ୍ତ୍ କରୁଥିଲ, ତା' ମଧୁର ବ୍ୟବହାର ବରଦାସ୍ତ୍ କରିପାରିଲ ନାହିଁ!" ପ୍ରସାଦ ଆଶ୍ଚର୍ଯ୍ୟ ହୋଇ କହିଲେ ।

"ଠିକ୍ କଥା । ତା' ମଧୁର ବ୍ୟବହାର ସକାଶେହିଁ ତାକୁ ଚାକିରି ହରାଇବାକୁ ପଡ଼ିଲା ।"

"କଥା କ'ଣ ପ୍ରସାଦ ପଚାରିଲେ ?"

"ଆରେ ଭାଇ, ଜଣଜଣଙ୍କ ସ୍ୱଭାବ ଏପରି ଯେ ହସିବା ବା ବିନୟ ଦେଖାଇବା ତାଙ୍କ ଜାତକରେ ନାହିଁ । ଯେଉଁମାନେ ସ୍ୱଭାବତଃ କଥାବାର୍ତ୍ତା ଆଚରଣ ବ୍ୟବହାରରେ ମଧୁର, ସେମାନେ ନିଶ୍ଚୟ ପ୍ରଶଂସନୀୟ । କିନ୍ତୁ ଗମ୍ଭୀର ବ୍ୟକ୍ତିଙ୍କୁ ଦୋଷ ଦେଇ ହେବ ନାହିଁ । ପୁରୁଣା ଗୁମାସ୍ତା ଏହି ଦ୍ୱିତୀୟ କିସମର ମଣିଷ । ତେବେ ତା' କାମ ଠିକ୍ ଥାଏ । ହଠାତ୍ ତୀର୍ଥରୁ ଫେରି ତା'ର ବ୍ୟବହାର ଦେଖି ମୋର ସନ୍ଦେହ ହେଲା । ଅନୁସନ୍ଧାନ କରି ଦେଖିଲି, ମୁଁ ନଥିବା ବେଳେ ସେ ଦୋକାନୀଙ୍କଠାରୁ ଉତ୍କୋଚ ନେଇ ଅମିଳକ ଜିନିଷମାନ ସେମାନଙ୍କୁ ଅଧିକ ମାତ୍ରାରେ ଯୋଗାଇଛି । ସେମାନେ କଳାବଜାରରେ ବେଶି ଦାମରେ ସେସବୁ ବିକ୍ରି କରନ୍ତି । ସେହି ଅନ୍ୟାୟ କାର୍ଯ୍ୟ ଯୋଗୁ ସେ ହଠାତ୍ କୃତ୍ରିମ ଭାବରେ ବିନୟୀ ହୋଇ ଉଠିଥାଏ ।" ଶିବନାଥ ବୁଝାଇ ଦେଲେ ।

"ସାବାସ୍ ତମ ବିଚକ୍ଷଣ ବିଚାର !" କହିଲେ ପ୍ରସାଦ ।





# ବିଷ୍ଣୁ ପୁରାଣ

ଦୁର୍ଯ୍ୟୋଧନଙ୍କର ମାମୁଁ ଶକୁନି ଥିଲେ ଗାନ୍ଧାର ଦେଶର ରାଜା ସୁବଳଙ୍କ ପୁତ୍ର । ଗାନ୍ଧାରୀ ଉଆଁସୀ କନ୍ୟା ଥିବାରୁ ତାଙ୍କୁ ବିବାହ କରିବାକୁ କେହି ରାଜି ହେଉ ନଥିଲେ । ତେଣୁ ତାଙ୍କ ପିତା ତାଙ୍କୁ ପ୍ରଥମେ ମେଣ୍ଢା ସହିତ ବିବାହ ଦେଲେ; ମେଣ୍ଢା ମରିଯିବାରୁ ଧୃତରାଷ୍ଟ୍ରଙ୍କ ସହିତ ବିବାହ ଦେଲେ । ତେବେ ତାଙ୍କର ଗ୍ରହର ଖରାପ ଅଂଶ ତଦ୍ୱାରା କଟିଗଲା ।

କିନ୍ତୁ ଥରେ ଭୀମସେନ ଓ ଦୁର୍ଯ୍ୟୋଧନ ମଧ୍ୟରେ କଳି ଲାଗିବାରୁ ଭୀମସେନ ତାଙ୍କୁ ବିଧବାପୁତ୍ର ଗୋଳକପୁତ୍ର ବୋଲି ଗାଳି ଦେଲା । ସେଥିରୁ ଦୁର୍ଯ୍ୟୋଧନ ମଧ୍ୟ ରାଗିକରି ଯାଇ ନିଜ ମା'ଙ୍କୁ ପଚାରି ସବୁ ବୁଝିଲା । ସେଇଠୁ ରାଗ ପଡ଼ିଲା ଯାଇ ମାମୁଁ ଓ ଅଜାଙ୍କ ଉପରେ । ଦୁହିଁଙ୍କୁ ମାରି ଦେବାର ମନସ୍ଥ କରି ଆଣି କାରାଗାରରେ ବନ୍ଦୀ କରି ରଖିଲା ।

କାରାଗାରରେ ରାଜା ସୁବଳଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ ସେ ପୁତ୍ର ଶକୁନିଙ୍କୁ କହିଗଲେ କି ତାଙ୍କ ହାଡ଼ରେ ପଶାକାଠି କରି ଗଢ଼ାଇଲେ ଯାହା ଡାକିଲେ ତାହା ପଡ଼ିବ ଏବଂ ସେଇ ପଶାକାଠି ଦ୍ୱାରାହିଁ ସେ ଦୁର୍ଯ୍ୟୋଧନ ଉପରେ ପ୍ରତିଶୋଧ ନେଇ ପାରିବ ।

ସୁବଳଙ୍କ ମୃତ୍ୟୁ ପରେ ଶକୁନି ଭାବିବାକୁ ଲାଗିଲେ କିପରି ପିତାଙ୍କ ମୃତ୍ୟୁର ପ୍ରତିଶୋଧ ନେବେ । ସେ ମନସ୍ଥ କଲେ ଦୁର୍ଯ୍ୟୋଧନର ପ୍ରିୟ ହୋଇ କୌଣସି ମତେ ପାଣ୍ଡବଙ୍କ ସହିତ



ତା'ର ଶତ୍ରୁତା କରାଇପାରିଲେ ନିଜର ଅଭୀଷ୍ଟ ସିଦ୍ଧ ହେବ ।

କାରାଗାରରେ କିଛିଦିନ ରହିବା ପରେ ହଠାତ୍ ଦିନେ ଦୁର୍ଯ୍ୟୋଧନ କାରାରକ୍ଷୀଠାରୁ ଶୁଣିବାକୁ ପାଇଲା ଯେ ଶକୁନି ପଶାଖେଳରେ ଧୁରନ୍ଧର । ତେଣୁ ସେ ଶକୁନିକୁ କାରାମୁକ୍ତ କରାଇ ନିଜର ମନ୍ତ୍ରୀ କରି ରଖିଲା । ଶକୁନିଙ୍କ ବୁଦ୍ଧି ଓ ଚତୁରତାରେ ସେ ଅତ୍ୟନ୍ତ ମୁଗ୍ଧ ହେଲା । ସେହି ସୁଯୋଗରେ ଦିନେ ସେ ଦୁର୍ଯ୍ୟୋଧନଙ୍କ ପାଖରେ ପାଣ୍ଡବମାନଙ୍କ ସହ ପଶାଖେଳର ପ୍ରସ୍ତାବ ଦେଲେ । ପାଣ୍ଡବମାନଙ୍କର ସଦ୍‌ଗୁଣ ଓ ଲୋକପ୍ରିୟତାରେ ଦୁର୍ଯ୍ୟୋଧନ ଆଗରୁ ଇର୍ଷ୍ୟାନ୍ୱିତ ହୋଇ ଭିତରେ ଜଳୁଥିଲା । ଆଜି ଏ ଅପୂର୍ବ ସୁଯୋଗ ସେ ଛାଡ଼ନ୍ତା କପରି ? ସେତେବେଳେ ପଶାଖେଳଥିଲା ରାଜାମାନଙ୍କର ସମ୍ମାନର ଖେଳ । କେହି ଜଣେ ଖେଳିବାକୁ ନିମନ୍ତ୍ରଣ କଲେ ଅନ୍ୟ ଜଣେ ନ ଯିବାଟା ସମ୍ମାନହାନୀକର ଥିଲା । ତା'ଛଡ଼ା ଖେଳରେ ସବୁବେଳେ ପଣ ରଖା ହେଉଥିଲା ।

ଯୁଧିଷ୍ଠିର ସତ୍ତ୍ୱଗୁଣସମ୍ପନ୍ନ ଥିଲେ ମଧ୍ୟ ଚନ୍ଦ୍ରରେ କଳଙ୍କ ତୁଲ୍ୟ ପଶାଖେଳର ନିଶାଥିଲା ତାଙ୍କ ଚରିତ୍ରର ଅନ୍ୟ ଏକ ଦୁର୍ବଳତା । ସେଇ ଦୁର୍ବଳତା ଯୋଗୁ ସେ ଦୁର୍ଯ୍ୟୋଧନ ଓ ଶକୁନିଙ୍କ ସହିତ ପଶାଖେଳ ରାଜ୍ୟକୁ, ଭାଇମାନଙ୍କୁ ଓ ଶେଷରେ ଦ୍ରୌପଦୀଙ୍କୁ ପଣରଖି ହରାଇଲେ ।

ଠିକ୍ ସେହି ସମୟରେ ଶ୍ରୀକୃଷ୍ଣ ନିଜ ସ୍ତ୍ରୀମାନଙ୍କ ସହିତ ପଶା ଖେଳୁଥିଲେ । ସେଥିରେ କୃଷ୍ଣ ଓ ରୁକ୍ମିଣୀ, ଦୁହେଁ ସତ୍ୟଭାମାଙ୍କ ପାଖରେ ହାରିଯିବାରୁ ସତ୍ୟଭାମା ରୁକ୍ମିଣୀଙ୍କୁ କହିଲେ, "ଅପା, ଏବେ ତମେ ଓ କୃଷ୍ଣ ଦୁହେଁ ମୋର ଅଧୀନ । ଚାଲ ମୋ ସହିତ ।" ଏକଥା କହି ସେ ରୁକ୍ମିଣୀଙ୍କ କାନ ଧରି ଟାଣିଲେ । କିନ୍ତୁ ସେତେବେଳେ ସମସ୍ତେ ଦେଖିଲେ ଶ୍ରୀକୃଷ୍ଣ ହଠାତ୍ ଗମ୍ଭୀର ହୋଇ ଗଲେ ଓ କହିଲେ, "ଅକ୍ଷୟ" କେହି କିଛି ବୁଝିପାରିଲେ ନାହିଁ ।

ଏଣେ ହସ୍ତିନାପୁରରେ କୌରବ ସଭାରେ ଦୁଃଶାସନ ଦ୍ରୌପଦୀଙ୍କର ବସ୍ତ୍ରହରଣ



କରୁଥାଏ । ସେତେବେଳେ ଅସହାୟା ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରି "ହା କୃଷ୍ଣ!" କହି ଉଚ୍ଚସ୍ୱରରେ କାନ୍ଦି ଉଠିଲେ । ସେତିକବେଳେ ଶ୍ରୀକୃଷ୍ଣଙ୍କ ଅପାର କରୁଣାରୁ ତାଙ୍କର ମାୟାବଳରେ ଏପରି ପରିସ୍ଥିତି ସୃଷ୍ଟି ହେଲା ଯେ ଦୁଃଶାସନ ଶାଢ଼ୀ ଟାଣି ଟାଣି ଗଦା କଲାଣି କିନ୍ତୁ ଶାଢ଼ୀର ଶେଷ ହେଉନାହିଁ । ଶେଷକୁ ଦୁଃଶାସନ କ୍ଲାନ୍ତ ହୋଇ ତଳେ ପଡ଼ିଗଲା ।

ସେ ସଭାରେ ଭୀମସେନ ସଂକଳ୍ପ କଲେ କି ଦୁଃଶାସନର ହାତ ଉପାଡ଼ି ସେଇ ରକ୍ତରେ ଦ୍ରୌପଦୀଙ୍କର ବେଣୀବନ୍ଧନ କରିବେ ।

ମୟସଭାରେ ଦୁର୍ଯ୍ୟୋଧନର ବୋକାମି ଦେଖି ଦ୍ରୌପଦୀ ହସି ପକାଇଥିଲେ । ସେଥିପାଇଁ ଏ ପ୍ରତିଶୋଧ । କ୍ରୋଧ, ଲୋଭ, ମଦ, ଈର୍ଷ୍ୟା ଇତ୍ୟାଦି ଦୁର୍ଗୁଣ ସବୁର ଆଧାର ଥିଲେ ଦୁର୍ଯ୍ୟୋଧନ ଓ ତା'ର ଭାଇମାନେ ।

ଅବିବାହିତା କୁନ୍ତୀଙ୍କ ଗର୍ଭରେ ସୂର୍ଯ୍ୟଙ୍କ ଅଂଶରୁ ଯିଏ କର୍ଣ୍ଣ ରୂପରେ ଜନ୍ମ ନେଲା ତା'ର ପୂର୍ବଜନ୍ମରେ ସେ ଥିଲା ସହସ୍ରକବଚ । ସେ ନରନାରାୟଣ ଋଷିଙ୍କ ସହିତ ଶତ୍ରୁତା କରି ଗୋଟିଏ ମାତ୍ର କବଚ ସହ ସୂର୍ଯ୍ୟ ମଣ୍ଡଳରେ ପ୍ରବେଶ କରିଥିଲା । ଏବେ ଦ୍ୱାପରରେ ନରଋଷି ହେଲେ ଅର୍ଜୁନ ଓ ନାରାୟଣ ହେଲେ ଶ୍ରୀକୃଷ୍ଣ ।

ଅର୍ଜୁନ ଓ କୃଷ୍ଣ ଦୁହେଁ ପିଉସୀ ପୁଅ ଓ ମାମୁଁ ପୁଅ ଭାଇ । ତା'ଛଡ଼ା ଶ୍ରୀକୃଷ୍ଣଙ୍କ ଭଉଣୀ ସୁଭଦ୍ରା ଥିଲେ ଅର୍ଜୁନଙ୍କର ଅନ୍ୟତମ ପତ୍ନୀ ।

ଶିଶୁ କର୍ଣ୍ଣକୁ କୁନ୍ତୀ ପାଣିରେ ଭସାଇ ଦେଲେ । ତାକୁ ପାଇଲେ ସୂତ ପତ୍ନୀ ରାଧା । ସେ ତାକୁ ପାଳି ପୋଷି ମଣିଷ କଲେ । ସେଥିପାଇଁ କର୍ଣ୍ଣଙ୍କର ଅନ୍ୟ ନାମ 'ରାଧେୟ' । ଦୁର୍ଯ୍ୟୋଧନ କର୍ଣ୍ଣକୁ ଏକ ଛୋଟ ରାଜ୍ୟ ଦାନ ଦେଇ ଚିରକାଳ ପାଇଁ ହାତରେ ରଖିଲା । ସେ ଭାବିଲା କର୍ଣ୍ଣ ଯାହାର ପକ୍ଷ ନେବେ ତାହାର ବିଜୟ ସୁନିଶ୍ଚିତ ।

କର୍ଣ୍ଣ ପିଲାଟି କାଳରୁ ଅର୍ଜୁନଙ୍କୁ ହରାଇବାର ସୁଯୋଗ ଖୋଜୁଥା'ନ୍ତି । ସେଥିପାଇଁ ସେ କୌରବ ପକ୍ଷରେ ଯୋଗ ଦେଲେ ।




ପାଣ୍ଡବମାନେ ବନବାସ କରିବାକୁ ଚାଲିଗଲେ । ଇତିମଧ୍ୟରେ ପଶାଖେଳରେ ଶ୍ରୀକୃଷ୍ଣ ହାରିଯିବାରୁ ତାଙ୍କୁ ସତ୍ୟଭାମା ନାରଦଙ୍କୁ ଦାନ ଦେଇ ପୁଣ୍ୟ ଲାଭ କରିବାକୁ ଚାହିଁଲେ । ଦାନ ଦେବା ପରେ ପୁଣି ତାଙ୍କ ମନରେ ଦୁଃଖ ହେବାରୁ ନାରଦ କହିଲେ, "ତାଙ୍କ ଓଜନର ସୁବର୍ଣ୍ଣ ଦାନ କରି ତାଙ୍କୁ ଫେରାଇ ନିଅ ।" ଏକଥା ଶୁଣି ସତ୍ୟଭାମା ତୁଲା ପାତ୍ରରେ ସୁନା ଆଣି ଥୋଉଥା'ନ୍ତି କିନ୍ତୁ ଶ୍ରୀକୃଷ୍ଣଙ୍କ ଓଜନ ବେଶି ହେଉଥାଏ । ଅବଶେଷରେ ରୁକ୍ମିଣୀ ଭକ୍ତିର ସହିତ ତୁଳସୀଦଳଟିଏ ଦେଲେ ଏବଂ ତାହା ଅଧିକ ଓଜନ ହେଲା ।

ସେ ଦୃଶ୍ୟ ଦେଖି ସତ୍ୟଭାମା କହିଲେ, "ଅପା ମୁଁ ଆଜି ପରାଜିତ ହୋଇଛି । ଶ୍ରୀକୃଷ୍ଣ ଯେ ସର୍ବଦା ଭକ୍ତିର ବଶ ସେ କଥା ମୁଁ ଭୁଲି ଯାଇଥିଲି । ତୁମ ଶକ୍ତିରୁହିଁ ମୁଁ ପୁଣି ସ୍ୱାମୀଙ୍କୁ ଫେରି ପାଇଛି । ତେଣୁ ମୁଁ ତୁମ ପାଦତଳର ଦାସୀପରି ।"

ସୁଭଦ୍ରା ଓ ଅର୍ଜୁନଙ୍କର ପରିଣୟ ପରେ ସୁଭଦ୍ରାଙ୍କର ଅନ୍ତଃସତ୍ତ୍ୱା ଅବସ୍ଥାରେ ଦିନେ ଅର୍ଜୁନ ବସି ସୁଭଦ୍ରାଙ୍କୁ ଚକ୍ରବ୍ୟୂହ ବିଷୟରେ ବୁଝାଉଥିଲେ । ପେଟରେ ଥାଇ ଅଭିମନ୍ୟୁ ସବୁ ଶୁଣି ପାରିଥିଲେ । ସେତିକିବେଳେ ଶ୍ରୀକୃଷ୍ଣ ଆସି କହିଲେ, "ଅର୍ଜୁନ, ମୋ ଭଉଣୀ ସୁଭଦ୍ରାର ହୃଦୟ ଅତ୍ୟନ୍ତ କୋମଳ । ତମେ ତାକୁ ଯୁଦ୍ଧ କଥା କାହିଁକି ଶୁଣାଉଛ ?" ତା'ପରେ ଅର୍ଜୁନ ଶ୍ରୀକୃଷ୍ଣଙ୍କ ସହିତ ଚାଲିଗଲେ । ତେଣୁ ଅଭିମନ୍ୟୁ କେବଳ ଚକ୍ରବ୍ୟୂହର ରଚନା ଓ ପ୍ରବେଶ କରିବା ପେଟରେ ଥାଇ ଶୁଣିଥିଲେ ।

ଏ ଘଟଣାର ଅନେକ ଦିନ ପରେ ପଞ୍ଚ-ପାଣ୍ଡବ ଓ ଦ୍ରୌପଦୀ ଅଜ୍ଞାତବାସ ସମୟରେ ବିରାଟ ଦେଶରେ ଯାଇ ରହିଲେ । ସେଠାରେ ରାଜାଙ୍କ ଘରେ ପାଞ୍ଚ ଭାଇ ଓ ଦ୍ରୌପଦୀ ଭିନ୍ନ ଭିନ୍ନ କାର୍ଯ୍ୟ ନେଇ ରହିଲେ । ଅର୍ଜୁନ ବୃହନ୍ନଳା ରୂପରେ ରାଜକନ୍ୟା ଉତ୍ତରାଙ୍କର ନୃତ୍ୟଶିକ୍ଷକ ଭାବରେ ଯୋଗ ଦେଲେ । ପରେ ଉତ୍ତରାଙ୍କ ସହ ଅଭିମନ୍ୟୁଙ୍କର ବିବାହ ହୋଇଥିଲା ।

ଥରେ ଅଭିମନ୍ୟୁ ଗର୍ବରେ କହିଲେ, "ମୁଁ ଏକା କୌରବସେନାଙ୍କୁ ମାରିଦେବି ।" କୃଷ୍ଣ ସ୍ନେହରେ ତାଙ୍କୁ ଥାପୁଡ଼ାଇ ଦେଇ କହିଲେ, "ତୁମେ ପ୍ରକୃତରେ ବୀରୋଚିତ କଥା କହୁଛ । ଭାରତ ଯୁବକବୀରମାନଙ୍କ ପାଇଁ ଧ୍ରୁବତାରା ରୂପରେ ଦେଖାଦେବ । ମୁଁ ତୋର ମାମୁଁ ବୋଲି ଗର୍ବିତ ।"

ଅଜ୍ଞାତବାସ ପରେ ସେମାନେ ପୁଣି ହସ୍ତିନା-ପୁରକୁ ଫେରି ଆସିଲେ । କିନ୍ତୁ ବିନା ଯୁଦ୍ଧରେ ସୂଚ୍ୟଗ୍ର ଭୂମି ଦେବନାହିଁ ବୋଲି ଦୁର୍ଯ୍ୟୋଧନ ଘୋଷଣା କରିବାରୁ ଯୁଦ୍ଧ ପାଇଁ ଦୁଇ ପକ୍ଷ ଆୟୋଜନରେ ଲଗି ପଡ଼ିଲେ ।

ଦିନେ ଶ୍ରୀକୃଷ୍ଣ ଶୋଇଥିବା ବେଳେ ଦୁଇ-ପକ୍ଷରୁ ଦୁର୍ଯ୍ୟୋଧନ ଓ ଅର୍ଜୁନ ଶ୍ରୀକୃଷ୍ଣଙ୍କ ନିଜ ନିଜ ପକ୍ଷ ପାଇଁ ନିମନ୍ତ୍ରଣ କରିବାକୁ ଯାଇଥା'ନ୍ତି । ନିଦରୁ ଉଠି ଶ୍ରୀକୃଷ୍ଣଙ୍କର ଆଖି ପଡ଼ିଲା ପ୍ରଥମେ ତାଙ୍କ ପାଦ ପାଖରେ ବସିଥିବା ଅର୍ଜୁନଙ୍କ ଉପରେ ଓ ପରେ ଦୁର୍ଯ୍ୟୋଧନଙ୍କ ଉପରେ । ଶ୍ରୀକୃଷ୍ଣ ଦୁହିଁଙ୍କ ପାଖରେ ଏକ ସର୍ତ୍ତ ରଖିଲେ । ସେ କହିଲେ, "ମୁଁ ଯେଉଁ ପକ୍ଷରେ ରହିବି ଅସ୍ତ୍ର ଧାରଣ କରିବି ନାହିଁ, କେବଳ ରହିବି । ଅନ୍ୟ ପକ୍ଷରେ ମୋର ସମଗ୍ର ଯାଦବ ସେନା ରହି ଯୁଦ୍ଧ କରିବେ । ତମେ ଦୁହେଁ ବାଛି ନିଅ । କିନ୍ତୁ ପ୍ରଥମେ ମୁଁ ଅର୍ଜୁନଙ୍କୁ ଦେଖିଛି, ତେଣୁ ବାଛିବାର ପ୍ରଥମ ଅଧିକାର ତାଙ୍କର ।"



ଅର୍ଜୁନ ତତ୍‌କ୍ଷଣାତ୍ ଶ୍ରୀକୃଷ୍ଣଙ୍କୁ ବାଛିଲେ । ଦୁର୍ଯ୍ୟୋଧନ ମଧ୍ୟ ସାରା ଯାଦବ ସେନାଙ୍କୁ ପାଇ ବଡ଼ ଖୁସିରେ ଫେରି ଆସିଲେ ।

ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ତରଫରୁ ଦୂତ ହୋଇ ଯୁଦ୍ଧ ବନ୍ଦ ପ୍ରସ୍ତାବ ନେଇ ଗଲେ । ସେ କହିଲେ କି ଏ ପ୍ରଳୟଙ୍କରୀ ଯୁଦ୍ଧରେ ସମସ୍ତେ ବିନାଶ ପ୍ରାପ୍ତ ହେବେ । ତେଣୁ ସେପରି ନ କରି ଉଚିତ୍ ଭାବରେ ରାଜ୍ୟ ବାଣ୍ଟି ଦେଇ ମିଳିମିଶି ରହିନିଅ । କେହି କିଛି ନ ଶୁଣିବାରୁ ଶ୍ରୀକୃଷ୍ଣ ଗମ୍ଭୀର ସ୍ୱରରେ କହିଲେ, "ଯଦି ଯୁଦ୍ଧ ଅନିବାର୍ଯ୍ୟ ତେବେ ମୁଁ ଅର୍ଜୁନଙ୍କ ରଥର ସାରଥି ହେବି । ହାତରେ ତାଙ୍କର ବିଶ୍ୱ-ବିଖ୍ୟାତ ଗାଣ୍ଡିବ ଧନୁ । ମହାକପି ହନୁମାନ



ପତାକା ଉପରେ ବିରାଜମାନ କରିବେ ଅର୍ଥାତ୍ ତାଙ୍କର ଚିହ୍ନ ଅଙ୍କିତ ରହିବା ସଙ୍ଗେ ସଙ୍ଗେ ତାଙ୍କର ଶକ୍ତି ମଧ୍ୟ ରହିବ । ଆଉ ଅର୍ଜୁନ ଯେତେବେଳେ ପ୍ରତିଶୋଧ ନେବେ ସେତେବେଳେ ଯୁଦ୍ଧ କ୍ଷେତ୍ରରୁ ଆଉ ପ୍ରାଣ ନେଇ କେହି ଫେରି ପାରିବ ନାହିଁ । ଆଉ ସେତେବେଳେ ତୁମର ପ୍ରାର୍ଥନା ଶୁଣିବାକୁ ମଧ୍ୟ କେହି ନଥିବେ । ତୁମ ପକ୍ଷରେ ଦଶହଜାର କର୍ଣ୍ଣ ରହିଲେ ବି ତୁମେ କିଛି କରିପାରିବ ନାହିଁ ।"

ଶ୍ରୀକୃଷ୍ଣଙ୍କର ଏପରି କଥା ଶୁଣି ଦୁର୍ଯୋଧନ କ୍ରୋଧରେ ଲାଲ ହୋଇଯାଇ କହିଲା, "ହେ କୃଷ୍ଣ, ତମେ ଦୂତର କାମ କରିବାକୁ ଆସିଛ ନା ପାଣ୍ଡବଙ୍କର ବୀରତ୍ୱ ବଖାଣି ଆମକୁ ଧମକ ଦେବାକୁ ଆସିଛ? ଏବେ ଆମ ଲୋକମାନେ ତୁମକୁ ଦଉଡ଼ିରେ ବାନ୍ଧି ପକାଇବେ ଆଉ ମୁଁ ଦେଖିବି କିଏ ଆସି ତୁମକୁ ରକ୍ଷା କରୁଛି ।" ଏକଥା କହି ସେ ଓ ଦୁଃଶାସନ ଦଉଡ଼ି ଆଣି କୃଷ୍ଣଙ୍କୁ ବାନ୍ଧି ପକାଇଲେ । ଏକଥା ଦେଖି କୃଷ୍ଣଙ୍କ ସାରଥୀ ସାତ୍ୟକୀ ନିଜର ତରବାରି ଧରି ଆଗେଇ ଆସିଲା ।

ଶ୍ରୀକୃଷ୍ଣ ସାତ୍ୟକୀକୁ ବନ୍ଦ କରି ଦୁର୍ଯୋଧନକୁ କହିଲେ, "ମୁଁ ଦୂତ ହୋଇ ଆସିଛି ବୋଲି ତ ମୋର ଅସ୍ତ୍ରଶସ୍ତ୍ର ନାହିଁ । ମୋତେ କ'ଣ ବନ୍ଦୀ କରିବା ଉଚିତ୍? ତୁମର ଏଡ଼େ ବିରାଟ ଦଳବଳ ସହିତ ମୁଁ ଏକା କ'ଣ ବା କରିପାରିବି? ମୋର ଭୁଲ ହେଉଛି ଯେ ମୁଁ ଏଠାକାର ଭଲମନ୍ଦ ବିଷୟ ବିଚାର ନ କରି ଚାଲି ଆସିଛି । ଯଦି ଏବେ ତମେ ମୋତେ ବନ୍ଦୀ କରିବାକୁ ଚାହଁ ତ କର ।"

ତା'ପରେ ଦୁଷ୍ଟ ଚତୁଷ୍ଟୟ (କର୍ଣ୍ଣ, ଶକୁନି, ଦୁର୍ଯୋଧନ ଓ ଦୁଃଶାସନ) ଶ୍ରୀକୃଷ୍ଣଙ୍କୁ ଚାରିଦିଗରୁ ଆକ୍ରମଣ କରି ବନ୍ଦୀ କରିବାକୁ ଚାହିଁଲେ । ଠିକ୍ ସେତିକିବେଳେ ଶ୍ରୀକୃଷ୍ଣ ପ୍ରକଟ କଲେ ନିଜର ବିଶ୍ୱରୂପ । ସେହି ରୂପ ଦେଖି ଦୁଷ୍ଟମାନେ ଭୟରେ ବିହ୍ୱଳ ହୋଇ ସେଠାରୁ ଦୂରେଇ ଗଲେ ।

ନାନା ପ୍ରକାର ଉପାୟ ଓ ପ୍ରସ୍ତାବ ଦ୍ୱାରା ଶ୍ରୀକୃଷ୍ଣ ଚେଷ୍ଟା କଲେ ଦୁଇପକ୍ଷ ମଧ୍ୟରେ ସନ୍ଧି ସ୍ଥାପନା କରିବାକୁ । କିନ୍ତୁ କୌଣସି

ପ୍ରକାରରେ ସେମାନେ ସେସବୁ ଗ୍ରହଣ କଲେ ନାହିଁ । ବର୍ତ୍ତମାନ ଯୁଦ୍ଧ ଅନିବାର୍ଯ୍ୟ ।

କୁରୁକ୍ଷେତ୍ରରେ ଅନେକ ଦେଶରୁ ରାଜାମାନେ ନିଜ ନିଜ ସୈନ୍ୟମାନଙ୍କ ସହିତ ଆସି କୌରବ ବା ପାଣ୍ଡବ ପକ୍ଷରେ ଯୋଗ ଦେଲେ । ମହାଭାରତ ଯୁଦ୍ଧ ପାଇଁ ଉଦ୍‌ଯୋଗ କରାଗଲା । ରଥ, ହସ୍ତୀ, ଘୋଡ଼ା ଓ ପଦାତିକମାନଙ୍କ ଦ୍ୱାରା ଗୃହଆଡ଼ ପୂରି ଉଠିଲା । ତୂରୀ, ଭେରୀ ବାଜି ଉଠିଲା । ଦିନେ ସେଇ କୁରୁକ୍ଷେତ୍ରରେ ପରଶୁରାମ କ୍ଷତ୍ରିୟମାନଙ୍କ ରକ୍ତରେ ପାଞ୍ଚୋଟି ରକ୍ତସରୋବର ସୃଷ୍ଟି କରିଥିଲେ ସେଗୁଡ଼ିକ ଏବେ ବି ସ୍ୟମନ୍ତ ପଞ୍ଚକ ନାମରେ ବିଦିତ । ପୁଣି ସେହି ସ୍ଥାନରେ ଏହି ବିରାଟ ଯୁଦ୍ଧ ହେବାକୁ ଯାଉଛି ।

ସଞ୍ଜୟଙ୍କର ଥିଲା ଦିବ୍ୟଦୃଷ୍ଟି । ଯାହା ଯାହା କୁରୁକ୍ଷେତ୍ରରେ ଘଟୁଥିଲା ସେସବୁ ସେ ଘରେ ବସି ଦେଖି ପାରୁଥିଲେ ଓ ଧୃତରାଷ୍ଟ୍ରଙ୍କୁ ସବୁ ବର୍ଣ୍ଣନା କରି ବୁଝାଉଥିଲେ । ଜନ୍ମାନ୍ଧ ତଥା ପୁତ୍ରପ୍ରେମରେ ବଶୀଭୂତ କୌରବ ଚକ୍ରବର୍ତ୍ତୀ ଧୃତରାଷ୍ଟ୍ର ପୁତ୍ରଙ୍କୁ ଯୁଦ୍ଧରୁ କୌଣସି ପ୍ରକାରେ ନିବୃତ୍ତ କରିପାରିଲେ ନାହିଁ । ସେ ବସି ବସି ସଞ୍ଜୟର କଥା ଶୁଣୁଥା'ନ୍ତି । ଗାନ୍ଧାରୀ ନିଜ ପତିଙ୍କୁ ଅନ୍ଧ ଦେଖି ସବୁବେଳେ ନିଜ ଆଖିରେ ପଟି ବାନ୍ଧିଥା'ନ୍ତି । ସେ ଥିଲେ ଅତ୍ୟନ୍ତ ପତିବ୍ରତା । ସେ ଶତପୁତ୍ରର ଜନନୀ । ସେ ମଧ୍ୟ ସ୍ୱାମୀଙ୍କ ପାଖରେ ବସି ଯୁଦ୍ଧର ସାରା ବୃତ୍ତାନ୍ତ ଶ୍ରବଣ କରୁଥା'ନ୍ତି ।

ଧୃତରାଷ୍ଟ୍ର ପଚାରିଲେ, "ସଞ୍ଜୟ, କୁହ ଏବେ ପାଣ୍ଡବ ଓ କୌରବଙ୍କ ମଧ୍ୟରେ କିଏ କିପରି ଅବସ୍ଥାରେ ଅଛି ?"

ସଞ୍ଜୟ କହିଲେ, "ପାଣ୍ଡବ ଓ କୌରବ ଦୁଇ ପକ୍ଷ ସମାନ ଭାବରେ ଶକ୍ତିଶାଳୀ । କିନ୍ତୁ ପାଣ୍ଡବ ଦଳରେ ଶ୍ରୀକୃଷ୍ଣ ଅଛନ୍ତି ବୋଲି ସେମାନେ ଅଧିକ ଶକ୍ତିଶାଳୀ ମନେ ହେଉଛନ୍ତି ।" ତା'ପରେ ସଞ୍ଜୟ କୁରୁକ୍ଷେତ୍ରର ସମାଚାର ବିସ୍ତାରପୂର୍ବକ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ଶୁଣାଇବାକୁ ଲାଗିଲେ ।





# ଦଗା !

ଜଣେ ଥିଲେ ନବାବ୍। ତାଙ୍କର ସୁନ୍ଦରୀ କନ୍ୟାଟିଏ ଥିଲେ। ଖାଲି ସୁନ୍ଦରୀ ନୁହେଁ, ସେ ଯୁଦ୍ଧ ବିଦ୍ୟାରେ, ଘୋଡ଼ା ଚଢ଼ିବାରେ, ତୀର ଚାଳନାରେ ବି ଧୁରନ୍ଧର। ନବାବ୍‌ଙ୍କର ପୁଅ ନଥିଲେ ବୋଲି ପୁଅପିଲା ଯେଉଁ ସବୁ ବିଦ୍ୟା ଶିଖିବା ସ୍ୱାଭାବିକ, କନ୍ୟା ବା ଶାହ୍‌ଜାଦୀ ସେସବୁ ଶିକ୍ଷା ନେଇଥିଲେ।

ଶାହ୍‌ଜାଦୀଙ୍କ ବିଭା ହେବା ବୟସ ହେଲା। ନବାବ୍ ପାତ୍ର ଖୋଜିଲେ। ଶାହ୍‌ଜାଦୀ କହିଲେ, "ବାବା, ତମେ ଏଣୁତେଣୁ ଜଣେ ନବାବ ବା ସୁଲ୍‌ତାନର ପୁଅଟିଏ ଯୋଗାଡ଼ କରି ଆଣିଲେ ଚଳିବ ନାହିଁ। ମୋତେ ଯିଏ ବିଭା ହେବ, ସେ ଯୁଦ୍ଧ ବିଦ୍ୟା, ଅସ୍ତ୍ରଚାଳନା, ଘୋଡ଼ାଚଢ଼ା ଇତ୍ୟାଦିରେ ଅନ୍ତତଃ ମୋର ସମକକ୍ଷ ହୋଇଥିବ ବା ମୋଠାରୁ ଅଧିକ ଗୁଣୀ ହୋଇଥିବା ଆବଶ୍ୟକ।"

"ଆରେ ଝିଅ, ସେମିତି କିଏ ଥିବ, ତାକୁ ଖୋଜି ବାହାର କରିବା କେମିତି?" ନବାବ୍ ପଚାରିଲେ।

"ବାବା, ସେଥିରେ ଅସୁବିଧାଟା କ'ଣ? ସର୍ବସାଧାରଣ ଏବଂ ଆଖପାଖର ରାଜ୍ୟମାନଙ୍କୁ ଜଣାଇଦିଅ କି ଯିଏ ମୋତେ ବିଭା ହେବାକୁ ମନ ବଳାଇବ ସିଏ ଆସି ମୋ ସହ ଏସବୁ ବିଷୟରେ ପ୍ରତିଯୋଗିତାରେ ଭାଗ ନେବ। ଯଦି ମୋତେ ପରାଜିତ କରି ପାରିବ, ତେବେ ଯାଇ ବିଭା ହେବ!" ଶାହ୍‌ଜାଦୀ କହିଲେ।

"ଝିଅ! ତୁ ବୁଝିପାରୁ ନାହୁଁ। ଏଥିରେ ବହୁତ ଅସୁବିଧା ଅଛି। ଯିଏ ମନ ସିଏ ଆସି ପ୍ରତିଯୋଗିତାରେ ଭାଗ ନେବାକୁ ଚାହିଁବ! ସେ ହାରି ଯାଉ ବରଂ, କିନ୍ତୁ ତୋ ସହ ଲଢ଼ିଥିଲା, ଏହିକଥାରେ କ'ଣ କମ ଗର୍ବିତ ହେବା କଥା?" ନବାବ୍ ବୁଝାଇ ଦେଲେ।



"ବାବା, ସେ ଅବସ୍ଥାର ପ୍ରତିକାର ମଧ୍ୟ ମୁଁ ସ୍ଥିର କରି ରଖିଛି। ତୁମେ ସଙ୍ଗେ ସଙ୍ଗେ ଏକଥା ବି ଘୋଷଣା କରିବ କି ଯିଏ ହାରିଯିବ, ତା' ଘୋଡ଼ା ଓ ଅସ୍ତ୍ର ବାଜ୍ୟାପ୍ତ ହେବ। ସେତିକି ନୁହେଁ, ତା' ପିଠିରେ ମୋ ନାମ ଛେଙ୍କା ଦେଇ ଲେଖିଦିଆଯିବ!" ଶାହଜାଦୀ ପ୍ରସ୍ତାବ ଦେଲେ।

ଏଥର କଥାଟି ନବାବ୍‌ଙ୍କ ମନକୁ ପାଇଲା। ଶାହଜାଦୀଙ୍କ ପ୍ରସ୍ତାବ ଅନୁସାରେ ଘୋଷଣା କରିଦିଆ ଗଲା।

ତଥାପି ଅନେକ ଯୁବକ ଆସିଲେ। ଘୋଡ଼ା ଦୌଡ଼ରେ, ଅସି ଚାଳନାରେ, ତୀର ମାରିବାରେ ଓ ଘୋଡ଼ାରେ ଚଢ଼ି କୌଶଳ ତରବାରି ସାହାଯ୍ୟରେ ଯୁଦ୍ଧ କରିବାରେ—ଏମିତି କେତେ ବିଷୟରେ ପ୍ରତିଯୋଗିତା ହେଉଥାଏ। ଅଧିକାଂଶ ଯୁବକ ପ୍ରଥମ ଗୋଟାଏ ଦୁଇଟା ବିଷୟରେହିଁ ହାରି ଯାଉଥାନ୍ତି। ଚାରିଜଣ ପ୍ରକାଣ୍ଡ ମଣିଷ ପ୍ରସ୍ତୁତ ହୋଇ ରହିଥାନ୍ତି ଦୌଡ଼ିଯାଇ ପରାଜିତ ପ୍ରାର୍ଥୀକୁ ମାଡ଼ି ବସି ତା' ହାତ ପଛକୁ କରି ବାନ୍ଧି ଦେଉଥାନ୍ତି ଓ ପିଠିରେ ତତଲା ଲୁହାରେ ଶାହଜାଦୀଙ୍କ ନାମ ଲେଖି ଦେଉଥାନ୍ତି।

ଲୋକେ ସବୁଦିନେ ଜମା ହୋଇ ପ୍ରତିଯୋଗିତା ଉପଭୋଗ କରୁଥାନ୍ତି।

ଦିନେ ବହୁ ଦୂରରୁ ଜଣେ ରାଜପୁତ୍ର ଆସି ନବାବ୍‌ଙ୍କୁ ଭେଟିଲେ ଓ ସେ ପ୍ରତିଯୋଗିତାରେ ଭାଗନେବେ ବୋଲି କହିଲେ। ରାଜପୁତ୍ରଙ୍କ ପିତା ନବାବଙ୍କର ମିତ୍ର ଥିଲେ। ନବାବ୍ ରାଜପୁତ୍ରଙ୍କ ଆଗ୍ରହ ବ୍ୟବହାରରେ ମୁଗ୍ଧ ହୋଇ କହିଲେ, "ପୁଅ, ତୁମେ ତ ମୋ ଝିଅର ସର୍ତ୍ତ ଜାଣିଛ। ଯଦି ପରାସ୍ତ ହେବ, ତୁମ ପିଠିରେ ତା' ନାମ ଲେଖା ହେବ। ତୁମେ ତୁମ ରାଜ୍ୟରେ ଭବିଷ୍ୟତର ରାଜା। ଏଭଳି ହିନସ୍ତା ହେବା ତୁମ ପକ୍ଷରେ ଭଲ ହେବନାହିଁ ପରା!"

କିନ୍ତୁ ରାଜପୁତ୍ର କହିଲେ, "ଜାହାଁପନା! ମୁଁ ପରାସ୍ତ ହେବି କାହିଁକି? ସବୁ ବିଦ୍ୟାରେ ମୁଁ ପାରଙ୍ଗମତା ଲାଭ କରିଛି। ମୋର ଆଶା ମୁଁ ଜିତିଯିବି।"



"ଯଦି ଲଢ଼ି ନ ପାରିବ ?" ନବାବ ପଚାରିଲେ ।

ରାଜପୁତ୍ର ଗମ୍ଭୀର ହୋଇ କହିଲେ, "ନ୍ୟାୟସଙ୍ଗତ ପ୍ରତିଯୋଗିତାରେ ମୁଁ ଲଢ଼ିବି । ଯଦି ପ୍ରତାରଣା ଯୋଗୁଁ ହାରିବି, ତେବେ···" ରାଜପୁତ୍ର ହସିଲେ ।

ନବାବ ସନ୍ତୁଷ୍ଟ ହେଲେ । ପ୍ରତିଯୋଗିତା ଆରମ୍ଭ ହେଲା । ଅଳ୍ପ ସମୟ ଭିତରେ ଶାହ୍‌ଜାଦା ବୁଝିପାରିଲେ ଯେ ଏଥର ସିଏ ଯାହାଙ୍କ ସହ ଲଢ଼ୁଛନ୍ତି, ସିଏ ଅସାଧାରଣ କୌଶଳୀ ଯୋଦ୍ଧା । ସଙ୍ଗେ ସଙ୍ଗେ ସେ ଭଦ୍ର ମଧ୍ୟ । କାରଣ ଯେତେବେଳେ ଘୋଡ଼ାରେ ଚଢ଼ି ପରସ୍ପର ଆକ୍ରମଣ କଲାବେଳେ ଶାହ୍‌ଜାଦା ଅଡୁଆ ଅବସ୍ଥାରେ ପଡ଼ୁଛନ୍ତି, ସେତେବେଳେ ରାଜପୁତ୍ର ତାଙ୍କର ସେ ଅବସ୍ଥାର ସୁଯୋଗ ନେଇ ତାଙ୍କୁ ହରାଇଦେବା ପରିବର୍ତ୍ତେ ଅପେକ୍ଷା କରୁଛନ୍ତି । ଶାହ୍‌ଜାଦା ସମ୍ଭାଳିଯିବା ପରେ ଯାଇ ପୁଣି ଲଢ଼ୁଛନ୍ତି ।

ରାଜପୁତ୍ରଙ୍କ କୃତିତ୍ୱ ଦେଖି ଦର୍ଶକମାନେ ପ୍ରବଳ ଉତ୍ସାହରେ ତାଙ୍କର ଜୟଧ୍ୱନି କରିବାକୁ ଲାଗିଲେ । ସେଥିରେ ଶାହ୍‌ଜାଦା ଘୋର ଅପମାନ ଅନୁଭବ କଲେ । ସେ ନିଜକୁ ସେ ପରିସ୍ଥିତିରୁ ରକ୍ଷା କରିବା ନିମନ୍ତେ ଗୋଟିଏ କୌଶଳ କଲେ । ହଠାତ୍ ରାଜପୁତ୍ରଙ୍କ ଆଡ଼େ ଅନାଇ ମୃଦୁ ହସିଦେଲେ । ରାଜପୁତ୍ର ଭାବିଲେ, ସେ ବୋଧହୁଏ କିଛି କହିବାକୁ ଚାହୁଁଛନ୍ତି । ତେଣୁ ସେ ଅସ୍ତ୍ର ସମ୍ବରଣ କଲେ । ସେହି ମୁହୂର୍ତ୍ତରେ ଶାହ୍‌ଜାଦା ତାଙ୍କୁ ଘୋଡ଼ାରୁ ପକାଇ ଦେଲେ ।

ସଙ୍ଗେ ସଙ୍ଗେ ଚାରି ବଳବାନ ଲୋକ ଯାଇ ରାଜପୁତ୍ରଙ୍କୁ ମାଡ଼ି ବସି କାବୁ କଲେ ଓ ପିଠିରେ ଶାହ୍‌ଜାଦାଙ୍କ ନାମ ଲେଖିଦେଲେ । ରାଜପୁତ୍ର ଉଠି ବସି ଆଉ କୁଆଡ଼େ ନ ଅନାଇ ନିଜ ଶିବିରକୁ ପଳେଇଗଲେ ।

ନବାବ ଶାହ୍‌ଜାଦାଙ୍କୁ କହିଲେ, "ଝିଅ, ତୁ କିଛି ଅନ୍ୟାୟ ମାର୍ଗରେ ରାଜପୁତ୍ରଙ୍କୁ ହରାଇ ନାହୁଁ ତ ?"

"ନା, ନା, ଅନ୍ୟାୟ କ'ଣ ?" ଶାହ୍‌ଜାଦା ଜବାବ୍ ଦେଲେ । କିନ୍ତୁ ତାଙ୍କ ମନରେ ସୁଖ



ନଥାଏ । ସେ ଯେ ଅନ୍ୟାୟ କରିଛନ୍ତି, ସେକଥା ତ ଆଉ ତାଙ୍କୁ ଅଜଣା ନଥିଲା !

ଏହା ପରେ ଆଉ କୌଣସି ପ୍ରାର୍ଥୀ ପ୍ରତିଯୋଗିତା ପାଇଁ ଆସିଲେ ନାହିଁ । ରାଜପୁତ୍ରଙ୍କୁ ବଞ୍ଚନା କରି ହରାଇଥିବା ହେତୁ ଶାହ୍‌ଜାଦୀ ଅନେକ ସମୟ ବିମର୍ଷ ରହୁଥାନ୍ତି । ସଖିମାନଙ୍କ ସହ ଉଦ୍ୟାନରେ ବୁଲୁଥାନ୍ତି ।

ଦିନେ ଉଦ୍ୟାନର ଗୋଟାଏ କୋଣରେ ଜଣେ ବୁଢ଼ା ବସିଥିବାର ସେମାନେ ଦେଖିଲେ । ବୁଢ଼ା ତା' ଆଗରେ ଗୁଡ଼ାଏ ଦୁର୍ମୂଲ୍ୟ ହୀରାଖଣ୍ଡ ଠୁଳ କରିଥାଏ ।

କୌତୁହଳୀ ଶାହ୍‌ଜାଦୀ ବୁଢ଼ା ପାଖକୁ ଯାଇ ପଚାରିଲେ, "ଏସବୁ ବିକିବ ?"

"ନା, ମୋତେ ଯିଏ ବିଭା ହେବ, ତାକୁ ଦେବି ।" ବୁଢ଼ା କହିଲା ।

ସମସ୍ତେ ହସି ଉଠିଲେ । ବୁଢ଼ା ! ତମର ଏ ଅବସ୍ଥାରେ ବିଭା ହେବାକୁ ସଉକ୍ କାହିଁକି ହେଲା ?"

"ସଉକ୍ ହେଲା ସଉକ୍ ! ତମକୁ କିଏ ବାଧ କରୁଛି ? ବିଭା ବୋଇଲେ ଆଉ କିଛି ନୁହେଁ । ଖାଲି ମୋ ସାଙ୍ଗରେ ଥରେ ଘୋଡ଼ାରେ ଚଢ଼ି ଏ ଗଛ ଚାରିପଟେ ବୁଲି ଆସିବାକୁ ହେବ । ମୋ କାଜୀ ଏଇଠି ଅଛନ୍ତି । ସିଏ ବାହା କରାଇ ଦେବେ । ଘୋଡ଼ାଚଢ଼ା ପରେ ପୁଣି ବାହାଘର ବିଧିବଦ୍ଧ ଭାବରେ ରଦ୍ଦ କରିଦେବେ ।

ଶାହ୍‌ଜାଦୀ ସଖିମାନଙ୍କୁ କହିଲେ, "କିଏ ରାଜି ଅଛ ?" ସମସ୍ତେ ରାଜି ଥିଲେ । ଏହା ମଜା ଲାଗୁଥିଲା । ପୁଣି ଏତେ ହୀରା ମିଳିବ !

ଜଣେ ସେଉଠୁ ବାହାରି ପଡିଲେ । କାଜୀ ବୁଢ଼ା ପଛରେ ବସିଥିଲେ । ବାହାଘର କରେଇ ଦେଲେ । ବୁଢ଼ା କୌଣସି ମତେ ଘୋଡ଼ାରେ ଚଢ଼ିଲା । ମୁହୂର୍ତ୍ତିକର ପତ୍ନୀ ତା' ପାଖରେ ବସିଲା । ଗଛ ଚାରିପଟେ ଥରେ ବୁଲି ଆସି ବୁଢ଼ା କହିଲା, "ତାଲାକ୍ !" କାଜୀ ବି କହିଦେଲେ, "ବାହାଘର ରଦ୍ଦ ହେଲା ।" ହୀରାତକ ଝିଅଟିକୁ ମିଳିଗଲା ।

ପରଦିନ ଦେଖିବା ବେଳକୁ ବୁଢ଼ା ପୁଣି ପୁଳାଏ ହୀରା ଧରି ବସିଛି । ସେଦିନ ଆଉ

ଜଣେ ସଖି ବୁଢ଼ାକୁ ମୁହୂର୍ତ୍ତକ ପାଇଁ ବିଭା ହୋଇ ହୀରକ ପାଇଲା। ଗୃହଦାନରେ ଗୃହ ସଖି ଏମିତି ଲାଭବାନ୍ ହେଲେ।

ପାଞ୍ଚମଦାନ ଶାହ୍‌ଜାଦୀ ଏକୁଟିଆ ଉଦ୍ୟାନ ଭିତରକୁ ଯାଇ ଦେଖିବା ବେଳକୁ ସବୁଠାରୁ ସୁନ୍ଦର ହୀରା ସେହିଦାନ ପାଇଁ ରହିଛି। ଆଖ-ପାଖରେ କେହି ନଥିଲେ। ଶାହ୍‌ଜାଦୀ କହିଲେ, "ଆସ। ଆଜି ମୁଁ ତମକୁ ବିଭା ହେବ।"

କାଜୀ ବିଭା କରାଇ ଦେଲେ। ଦୁହେଁ ଘୋଡ଼ାରେ ଚଢ଼ିଲେ। ମୁହୂର୍ତ୍ତକ ଭିତରେ ବୁଢ଼ା ଘୋଡ଼ା ଝପଟାଇ ଉଦ୍ୟାନ ଟପି ବିଜୁଳି ବେଗରେ ଯାଇ ନିଜ ଶିବିରରେ ପହଞ୍ଚିଲା।

ରାଜକୁମାରୀ ଲଜ୍ଜା ଓ ବିସ୍ମୟରେ ପଚାରିଲେ, "ଇଏ କ'ଣ ?"

"ତମକୁ ତାଲାକ୍ ଦେବାର ଇଚ୍ଛା ମୋର ନାହିଁ। ମୁଁ ବିଧିବଦ୍ଧ ଭାବରେ ବିବାହ କରିଛି। ତମେ ମୋ ସ୍ତ୍ରୀ ହୋଇ ରହିଲ।" ବୁଢ଼ା ଉତ୍ତର ଦେଇ ସଙ୍ଗେ ସଙ୍ଗେ ମିଛ ଦାଢ଼ୀ ଖୋଲି ଦେଲା। ମୁହଁରୁ ରଙ୍ଗ ଉଠାଇ ଦେଲା। ଦେଖିବା ବେଳକୁ ସେ ସେହି ରାଜପୁତ୍ର !

ଶାହ୍‌ଜାଦୀଙ୍କ ମନରେ ଉଲ୍ଲାସ ଫୁଟି ଉଠିଲା। କିନ୍ତୁ ସେ ତାହା ନ ଦେଖାଇ କହିଲେ, "ତମେ ମୋତେ ଦଗାଦେଇ ବିଭା ହୋଇଛ !"

"ତମେ ମୋତେ ଦଗା ଦେଇ ହରାଇ ନଥିଲ ?" ରାଜପୁତ୍ର ପଚାରିଲେ।

ଶାହ୍‌ଜାଦୀ କିଛି ଉତ୍ତର ଦେଇ ପାରିଲେ ନାହିଁ। ରାଜପୁତ୍ର ପୁଣି କହିଲେ, "ମୋ ପିଠିରେ ତମ ନାମ ଲେଖାଇବାର ଦରକାର ନଥିଲା। ମୋ ହୃଦୟରେ ତମେ ରହିଛ।" ଶାହଜାଦୀ ଲାଜରେ ମୁହଁ ତଳକୁ କଲେ।

ରାଜପୁତ୍ର ନବାବ୍‌ଙ୍କ ପାଖକୁ ସମ୍ବାଦ ପଠାଇଲେ। ନବାବ୍ ନିଜେ ଆସି ଉଭୟଙ୍କୁ ପ୍ରାସାଦକୁ ନେଇଗଲେ। ତାଙ୍କ ଆନନ୍ଦର ସୀମା ନଥାଏ। ମହାସମାରୋହରେ ଦୁଇ-ଜଣଙ୍କର ଆନୁଷ୍ଠାନିକ ଭାବରେ ବିବାହ ଉତ୍ସବ ଅନୁଷ୍ଠିତ ହେଲା।



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ


Mrs. Manjula


H. N. Kelora

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁନ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଜୀବନ କି ଖାଲି କାମରେ କଟିବ, ଖେଳିବାକୁ ଟିକେ ବସି ବସିକା ?

ଦ୍ୱିତୀୟ ଚିତ୍ର : ଜୀବନ ତ ଖାଲି କରଣାର ବାଲି, ସଖା ସହୋଦର ମିଛ ମିଛକା !

ପୁରସ୍କାର ବିଜୟୀ : ପ୍ରଣବାନନ୍ଦ ରଥ, ପୁରୀ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. ଆଲେକ୍ଜାଣ୍ଡାର ଗ୍ରାହାମ ବେଲ୍ । ୨. ଗାଲିଲିଓ । ୩. ଥମାସ୍ ଏଡିସନ୍ ।
୪. ଭିଉସ୍ କେଲ୍ଲାସ୍ । ୫. ଉଇଲିୟମ୍ କ୍ରୋକସ୍ ।



# ଚନ୍ଦମାମୁଁ କ୍ୟାମେଲ

## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଜିତନ୍ତୁ**

**କ୍ୟାମେଲ**

ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ବିତୀୟ ପୁରସ୍କାର ଟ. ୧୦/-
୧୦ ତୃତୀୟ ପୁରସ୍କାର ଟ. ୫/-
୧୦ ସାର୍ଟିଫିକେଟ



ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ବାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ—ପୋ.ବକ୍ସ ନ.୧୧୫୦୧,ନରୀମ୍ୟାନ ପଏଣ୍ଟ ପୋଷ୍ଟ ଅଫିସ, ବମ୍ବେ ୪୦୦ ୦୨୧ ବିଚାରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name: .............................................................. Age: ..............................

Address: ..............................................................